

# ପୋଥି ପରିଚୟ

## (POTHI PARICHAYA)


ସମ୍ପାଦନା

ଡକ୍ଟର ଧୀରେନ୍ଦ୍ର କୁମାର ଷଡ଼ଙ୍ଗୀ

ଡକ୍ଟର ଶ୍ରୀଚରଣ ମହାନ୍ତି






ଜାତୀୟକବି ବୀରକିଶୋର ସରକାରୀ ମହାବିଦ୍ୟାଳୟ

କଟକ






# POTHI PARICHAYA

This book is published under the scheme
**"Educational Innovation"** Sponsored by the
University Grants Commission,
Eastern Regional Office, Salt Lake, Kolkata

*Editors*
**Dr. Dhirendra Kumar Sarangi**
Principal, J.K.B.K. Govt. College
**Dr. Sricharan Mohanty**
Rtd. Reader in Odiya

*Published by*
**J.K.B.K. Govt. College**
O.M.P. Square, Cuttack - 753003, Odisha

**First Edition :** 2012 / 500 Copies

*Typeseting Designning and Printed by*
**Orissa Printing Works**
Mohammadia Bazar, Surya Lane
Cuttack-753002.





# ସୂଚୀପତ୍ର







# PREFACE

The Chinese had the technology of manufacturing paper in the second century AD. But the technology remained a secret with the Chinese. Like other parts of the world Indians had no knowledge about the technique of paper making. Due to easy availability of palm leave in the subcontinent; for over two thousand years scribes have recorded much of Indian literary and scientific heritage on dried, smoothed and smoke-treated palm leaves. Hence palm leaves had served the purpose of paper in India.

According to recent survey, there are more than hundred thousand unpublished palm leaf manuscripts on various aspects of traditional Indian knowledge over the following 12 areas such as : 1. Indian medicine including Siddha, Ayurveda and Unani System, 2. Human Anatomy, 3. Veterinary Science, 4. Agriculture, 5. Traditional art and architecture like temple art, temple architecture, ship building, carpentry, metal working and sculpture. 6. Traditional music, 7. Technique of writing, 8. Astrology and astronomy. 9. Yoga, 10. Animal Husbandry, 11. Martial art and 12. Physiognomy.

Today there is a growing appreciation worldwide about traditional knowledge particularly in the field of medicine. Modern research has demonstrated that traditional system of medicine from Siddha, Ayurveda and Unani give lasting relief to many chronic diseases which may not be cured by allopathic treatment. Moreover, the native medicines are based either on herbs or metals which are not injurious to health when used according to traditional prescription. Now a days with the help of palm-leaf manuscripts attempts are being made in India to treat life-threatening diseases like AIDS, heart diseases and diabetes. Publication of these rare manuscripts will undoubtedly be a welcome contribution to medical research in India, Asia and Worldwide.

Being organic in nature palm-leaf manuscripts are susceptible to decay and disintegration over time. The palm-leaf manuscripts could









last maximum for three to four centuries, after which the matters could be copied by scribed into freshly treated palm-leaves. With introduction of printing press in India, during 19th century the process of cycle of copying from palm leaves came to an end. With this the knowledge acquired by our Rishes and Munies on different subjects are gradually entering into oblivion. The knowledge preserved on the palm leaf manuscript has began a long slide into obscurity and destruction. The tradition of scribe is fast dying. Even the very ability to read the archaic palm-leaf script today survives only among specially trained scholars. Considering the above fact this book is an attempt to educate our college student in areas of indentification, collection and conservation of palm-leaf manuscripts kept with different persons in the villages of Odisha. The second stage will consist of microfilming, editing, translating and texual criticism etc. This book has been made possible because of the valuable contribution made by Dr. Sricharan Mohanty, Prof. Debendra Kumar Dash, Marcel Thomas, Kshirod Prasad Mohanty, Dr. Karunakar Bisoi, Dr. Bhagyalipi Malla, Pandit Antaryami Mishra, Dr. Debiprasanna Pattnaik, Dr. Subash Chandrä Dash, Dr. Nirmal Das, Prof. Asutosh Pattnaik, Prof. Krushnacharan Sahoo, Mili Bisoi, and very rare pictures on palm-leaf provided by the present curator of the state museum Mrs. Bhagyalipi Malla. I don't have the words to acknowledge the professional and personal inputs received from my colleagues during the preparation of this book. We warmly welcome comments and suggestions for improvement from our readers.

**Dhirendra Kumar Sarangi**
Principa, J.K.B.K. Govt. College
Cuttack, Odisha







# ଲେଖନ-ଉପାଦାନର ଇତିହାସ
## (History of Writing Materials)

**ଡକ୍ଟର ଧୀରେନ୍ଦ୍ର କୁମାର ଷଡ଼ଙ୍ଗୀ**

ଗୁରୁଙ୍କ ମୁଖନିଃସୃତ ବିଦ୍ୟାକୁ ବାରମ୍ବାର ଶୁଣି ବିଦ୍ୟାର୍ଥୀମାନେ ବିଷୟଗୁଡ଼ିକୁ ମନେରଖୁଥିଲେ । ଲିପିର ଉଦ୍ଭାବନ ପୂର୍ବରୁ ଜ୍ଞାନର ପ୍ରଚାର, ବିସ୍ତୃତି ଓ ବ୍ୟାପ୍ତି ପୀଢ଼ି ପରେ ପୀଢ଼ି ଗୁରୁଙ୍କ ଠାରୁ ଶିଷ୍ୟମାନଙ୍କ ମଧ୍ୟରେ ଏହି ଉପାୟରେ ପ୍ରସାରିତ ହେଉଥିଲା । ଶୁଣି ଶୁଣି ମନେରଖୁଥିବାରୁ ଭାରତରେ ବେଦର ଅନ୍ୟନାମ ଶ୍ରୁତି । ଇତିହାସ ଅଗ୍ନିର ଆବିଷ୍କାରକ ବା ଚକର ଉଦ୍ଭାବକଙ୍କୁ ମନେରଖିନି । ସେହିପରି ପ୍ରଥମ ଅକ୍ଷର, ଅକ୍ଷରରୁ ଶବ୍ଦ, ଶବ୍ଦରୁ ବାକ୍ୟର ସୃଷ୍ଟିକର୍ତ୍ତାଙ୍କର ଖବର ମଧ୍ୟ ଇତିହାସ ରଖିନି । କିନ୍ତୁ ବିଶ୍ୱାସ କରାଯାଏ ପ୍ରାୟ ଖ୍ରୀଷ୍ଟପୂର୍ବ ୩୧୦୦ ମସିହା ବେଳକୁ ମେସୋପଟାମିଆଁର ନଦୀ ଉପତ୍ୟକାରେ ଚିକିଟା ମାଟିକୁ ବ୍ୟବହାର କରି କେଉଁ ଜଣେ ଅଜଣା ବିଦୂଷ ମାଟିରେ ସିଲଟ ତିଆରି କରି, କଞ୍ଚା ଥିବା ସମୟରେ ତାହା ଉପରେ ଗୋଜିଆ ଲେଖନୀ ସାହାଯ୍ୟରେ ପୃଥିବୀର ପ୍ରଥମ ଅକ୍ଷର, ଶବ୍ଦ ଏବଂ ବାକ୍ୟ ଲେଖିଥିଲେ । ସେହି ସମୟରେ କଞ୍ଚା ମାଟିରେ ତିଆରି ସିଲଟକୁ ଖରାରେ ଶୁଖାଇ ସ୍ଥାୟୀଭାବେ ମନ୍ଦିରମାନଙ୍କରେ ସାଇତି ରଖୁଥିଲେ ।

ଖ୍ରୀଷ୍ଟପୂର୍ବ ୩୦୦୦ ମସିହା ବେଳକୁ ଇଜିପ୍ଟ ଦେଶରେ ପାପାଇରସ୍ (Papyrus= *Cyperus papyrus*) ନାମକ ଏକ ଜଳଚର ବୁଦାଳିଆ ଡେଙ୍ଗା ଗଛର କାଣ୍ଡକୁ କାଟି ଲୋକମାନେ ଲେଖନ-ଉପାଦାନ (writing material) ତିଆରି କରୁଥିଲେ । ପାପାଇରସ୍ ଗଛ ନୀଳନଦୀର କୂଳେ କୂଳେ ବଢ଼େ । ଏହାର କାଣ୍ଡ ନିଦାଳିଆ ଏବଂ ତିନିକୋଣିଆ । ଏହାର କାଣ୍ଡକୁ ଲମ୍ବଭାବରେ କାଟି ପ୍ରତ୍ୟେକ କାଣ୍ଡରୁ ତିନୋଟି ସରୁ ସରୁ ପଟି ବାହାରକରାଯାଏ । ଏହି ସରୁ ପଟିଗୁଡ଼ିକ ଲମ୍ବ ଭାବରେ ଯୋଡ଼ି ଆୟତାକାର ଲେଖନ ପୃଷ୍ଠ ତିଆରି କରାଯାଏ । ଏହାର ପଛପଟରେ ଅନ୍ୟ ଏକ ସ୍ତର ଠିକ୍ ସେହି ଉପାୟରେ ତିଆରି କରି ପ୍ରଥମ ସ୍ତର ସହିତ ସମକୋଣରେ ରଖି ଅଠା ଦେଇ ଯୋଡ଼ାଯାଏ । ଏହା ଉପରେ ଚାପ ପ୍ରୟୋଗ କରି, ଖରାରେ ଶୁଖାଇ ପାପାଇରସ୍ ଫର୍ଦ୍ଦକୁ ମୋଡ଼ି ଦେଇ ପାପାଇରସ୍ ମୋଡ଼ା (Papyrul scroll) ତିଆରି କରାଯାଏ । ଲେଖା ଯାଉଥିବା ପଟକୁ ହାତୀଦାନ୍ତ ବା ଶାମୁକା ସାହାଯ୍ୟରେ ଘସି ମସୃଣ କରାଯାଏ । ପ୍ରାୟ ୩୫୦୦ ବର୍ଷ ଧରି ଇଜିପ୍ଟ, ଗ୍ରୀସ୍ ଓ ରୋମ ସଭ୍ୟତାରେ ଲେଖାପଢ଼ା ପାଇଁ ଏହି ପ୍ରକାର ପାପାଇରସ୍ ମୋଡ଼ା ବ୍ୟବହାର କରାଯାଉଥିଲା । ତେଣୁ ଲେଖନ-ଉପାଦାନର ଇତିହାସରେ ପାପାଇରସ୍ ମୋଡ଼ାର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି ।

ଇଜିପ୍ଟ, ଗ୍ରୀସ୍ ଏବଂ ରୋମାନ୍ ସଭ୍ୟତାରେ ଲେଖାପଢ଼ା ପାଇଁ ଯେତେବେଳେ ପାପାଇରସ୍‌ର ମୋଡ଼ା ବ୍ୟବହାର ହେଉଥିଲା, ସେହି ସମୟ ମଧ୍ୟରେ ପ୍ରାୟ ଖ୍ରୀଷ୍ଟପୂର୍ବ ୧୫୦୦ ମସିହା ବେଳକୁ ଚୀନ୍ ଦେଶର ଲୋକମାନେ ବାଉଁଶ ପାତିଆକୁ ଲେଖନ-ଉପାଦାନ ଭାବେ ବ୍ୟବହାର କରୁଥିଲେ । ଗୋଟିଏ ଧାଡ଼ି ଅକ୍ଷର ଲେଖାହେବା ପରି ପତଳା ସରୁସରୁ ବାଉଁଶ ପାତିଆକୁ ବହି ଲେଖା ପାଇଁ ବ୍ୟବହାର କରୁଥିଲେ । ବାଉଁଶ ପାତିଆକୁ ସୂତା ସାହାଯ୍ୟରେ ଯୋଡ଼ି ଧାଡ଼ି ଧାଡ଼ି ଅକ୍ଷର ଲେଖାର ବ୍ୟବସ୍ଥା କରୁଥିଲେ । ଖ୍ରୀଷ୍ଟପୂର୍ବ ୪୦୦ ମସିହା ପର୍ଯ୍ୟନ୍ତ ଚୀନ୍ ଦେଶରେ ବାଉଁଶ ପାତିଆରେ ତିଆରି ବହିର ପ୍ରଚଳନ ଥିବାର ସୂଚନା ମିଳେ ।

କେବଳ ଇଜିପ୍ଟ ବା ଚୀନ୍ ଦେଶରେ ନୁହେଁ, ଖ୍ରୀଷ୍ଟପୂର୍ବ ୫୦୦ ମସିହା ପରଠାରୁ ପୃଥିବୀର ବିଭିନ୍ନ ଦେଶରେ ଲିପିକାର ବା ଲେଖକମାନେ ସେହି ଦେଶରେ ମିଳୁଥିବା ବିଭିନ୍ନ ଗଛର ପତ୍ର, ଗଛର ବକଳ, କାଠ ଓ ମହମକୁ ଲେଖନ-







ଉପାଦାନ ଭାବେ ବ୍ୟବହାର କରୁଥିଲେ । ଥରେ ଲେଖାହେବା ପରେ ମହମ ତିଆରି ଲେଖନ-ଉପାଦାନକୁ ତରଳାଇ ପୁନଃ ବ୍ୟବହାରକ୍ଷମ କରୁଥିଲେ । ଏସିଆ ମହାଦେଶର ବିଭିନ୍ନ ଭାଗରେ ଶ୍ରୀତାଳ (Talipot = *copypha umbraculifera*) ଓ ଖରତାଳ (palmyra = *Borassus flabellifera*) ପତ୍ରକୁ ଲେଖନ-ଉପାଦାନ ଭାବେ ଖ୍ରୀଷ୍ଟପୂର୍ବ ୧୫୦୦ ଶତାବ୍ଦୀ ଠାରୁ ବ୍ୟବହାର କରାଯାଉ ଥିବାର ବିଶ୍ୱାସ କରାଯାଏ । ଭାରତୀୟ ପୁରାଣ ଶାସ୍ତ୍ର ସେହି ସମୟରୁ ତାଳପତ୍ରରେ ଲେଖାଯାଇଥିବା ଅନୁମାନ କରାଯାଏ । ତାଳପତ୍ର ପୋଥିର ପରମାୟୁ ଖୁବ୍ ବେଶୀରେ ୩୦୦ ରୁ ୪୦୦ ବର୍ଷ ଏହା ବିଭିନ୍ନ କାରଣ ଯୋଗୁଁ ନଷ୍ଟ ହୋଇଯାଏ । ନଷ୍ଟ ହେବା ପୂର୍ବରୁ ଲିପିକାରମାନେ ନୂଆ ଭାବରେ ପୁଣିଥରେ ସେହି ବିଷୟକୁ ନକଲ କରି ନୂଆପୋଥି ତିଆରି କରୁଥିଲେ । ଥାଇଲାଣ୍ଡ, କାମ୍ବୋଡ଼ିଆ, ଇଣ୍ଡୋନେସିଆ ପରି ଏସିଆ ମହାଦେଶମାନଙ୍କରେ ଭାରତୀୟ ସଂସ୍କୃତିର ପ୍ରସାର ସମୟରେ ତାଳପତ୍ର ଉପରେ ଲିଖନ ପ୍ରଣାଳି ମଧ ସେହି ଦେଶମାନଙ୍କୁ ପ୍ରସାରିତ ହୋଇଥିଲା । ପ୍ରମାଣ ସ୍ୱରୂପ ସେହି ଦେଶମାନଙ୍କରୁ ତାଳପତ୍ର ଗ୍ରନ୍ଥମାନ ଏବେ ମଧ ମିଳୁଛି । ଭାରତର ପ୍ରାଚୀନତମ ଭାଷା ତାମିଲରେ ଲିଖିତ ବ୍ୟାକରଣ ବହି 'ତୋଲାକାପିୟମ୍' ଖ୍ରୀଷ୍ଟପୂର୍ବ ୫୦୦ ମସିହା ସମୟରେ ଲିଖିତ ବୋଲି ଜଣାଯାଏ । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ଲିଖିତ ଏହି ବହିର ନକଲ ଏବେ ମଧ ସଂଗୃହୀତ ହୋଇ ରହିଛି । ଚାରଲସ୍ ଫାବ୍ରି ସାହେବଙ୍କ ମତ ଅନୁସାରେ ଓଡ଼ିଶାରେ ତାଳପତ୍ର ପୋଥି ଏବଂ ତାଳପତ୍ର ଉପରେ ଅଙ୍କା ଯାଇଥିବା ଚିତ୍ର, ନବମ, ଦଶମ ଏବଂ ଏକାଦଶ ଶତାବ୍ଦୀ ସମୟର ପୁରୁଣା । କିନ୍ତୁ ୧୫ଶ ଶତାବ୍ଦୀ ପୂର୍ବରୁ ଲିଖିତ ତାଳପତ୍ର ପୋଥି ଓଡ଼ିଶାର କୌଣସି ସ୍ଥାନରୁ ମିଳିନାହିଁ ।

ଖ୍ରୀଷ୍ଟପୂର୍ବ ୧୯୭ ଠାରୁ ୧୫୯ ମସିହା ମଧରେ ତୁର୍କୀ ଉପକୂଳସ୍ଥ ପେରଗାମମ୍ (Pergamum) ରାଜ୍ୟର ଶାସକ ଇଉମେନିସ୍-୨ ମେଣ୍ଢା ଓ ଛେଳିଙ୍କର ଚମଡ଼ା (parchment)କୁ ଲେଖନ-ଉପାଦାନ ଭାବେ ପ୍ରଥମେ ବ୍ୟବହାର କରିଥିଲେ । ଏହା ବ୍ୟୟବହୁଳ ଥିଲା । କିନ୍ତୁ ଭୂମଧ ସାଗର ଅଞ୍ଚଳରେ ଏହାର ପ୍ରଚଳନ ବହୁଳ ଭାବେ ହେଉଥିଲା । ଚମଡ଼ାର ଦୁଇ ପଟକୁ ଘଷି, ଭଲଭାବେ ସଫାକରି ଦୁଇପଟରେ ଅକ୍ଷର ଲେଖାଯାଇ ପାରୁଥିଲା । ୪୦୦ ମସିହା ଠାରୁ ୧୫୦୦ ମସିହା ପର୍ଯ୍ୟନ୍ତ ମଧ୍ୟଯୁଗରେ ୟୁରୋପ ମହାଦେଶର ପ୍ରାୟ ସବୁ ଦେଶରେ ଲିପିକାର ଓ ଲେଖକମାନେ ଚମଡ଼ାକୁ ଲେଖନ ଉପାଦାନ ଭାବେ ବ୍ୟବହାର କରୁଥିଲେ । ମେଣ୍ଢା ଓ ଛେଳିଙ୍କ ଗର୍ଭସ୍ଥ ଛୁଆମାନଙ୍କର ଚମଡ଼ାରୁ ପ୍ରସ୍ତୁତ ଲେଖନ-ଉପାଦନ ନରମ ଓ ମସୃଣ ଥିବାରୁ ସେଥିରୁ ତିଆରି ବହିର ଦାମ ଅଧିକ ଥିଲା । ଚମଡ଼ାର ବ୍ୟବହାର ପରେ ପାପାଇରସ ମୋଡ଼ାର ବ୍ୟବହାର ହ୍ରାସ ପାଇଥିଲା । କାରଣ ପଢ଼ିବା ପାଇଁ ଜଣେ ପାଠକକୁ ପାପାଇରସ ମୋଡ଼ାକୁ ଖୋଲିବାକୁ ଏବଂ ପୁଣି ଗୁଡ଼ାଇବାକୁ ପଡୁଥିଲା ଯାହା ପାଠକଙ୍କ ପାଇଁ ଅସୁବିଧା ହେଉଥିଲା । କିନ୍ତୁ ଚମଡ଼ାକୁ ବହି ପୃଷ୍ଠାଭାବେ ବ୍ୟବହାର ଦ୍ୱାରା ବହିର ପ୍ରାରମ୍ଭରେ ଏକ ସୂଚୀପତ୍ରର ବ୍ୟବସ୍ଥା ରହିଲା । ଅଧା ପଢ଼ିଥିବା ପୃଷ୍ଠାକୁ ଜାଣିବା ପାଇଁ ପକ୍ଷୀପରକୁ ଚିହ୍ନଟ ଭାବେ ବ୍ୟବହାର କରାଗଲା । ଲେଖିବା ଏବଂ ପଢ଼ିବା ସହଜ ହେଲା ।

ଖ୍ରୀଷ୍ଟାବ୍ଦ ୧୦୫ ମସିହା ସମୟରେ ଚୀନ୍ ଦେଶର ରାଜାଙ୍କ ଦରବାରରେ କାମ କରୁଥିବା କାଇଲୁନ୍ (Cai Lun) ନାମକ ଜଣେ ନପୁଂସକ ପ୍ରଥମ ଥର ପାଇଁ ଛିଣ୍ଡାକନା, ଘାସ, ଲଉରେଲ ଓ ମଲ୍‌ବରି ଗଛର ତନ୍ତୁରୁ ତିଆରି କାଗଜ ରାଜାଙ୍କୁ ଉପହାର ଦେଇଥିଲେ । ତେଣୁ ଦ୍ୱିତୀୟ ଶତାବ୍ଦୀରେ ଚୀନ୍ ଦେଶର ଲୋକମାନେ କାଗଜ ତିଆରି କୌଶଳ ଶିଖିଲେ । ଉପରଲିଖିତ ଦ୍ରବ୍ୟମାନଙ୍କୁ ପାଣିରେ ଭିଜାଇ, ଗରମକରି, ଭଲଭାବେ ଗୁଣ୍ଡକରି ମଣ୍ଡ ତିଆରି କରୁଥିଲେ । ମଣ୍ଡକୁ ସରୁ ଛଣା ମାଧ୍ୟମରେ ଛାଣି ଏକ ଛାଞ୍ଚ ମଧରେ ରଖି ଶୁଖାଇ କାଗଜ ପ୍ରସ୍ତୁତ କରୁଥିଲେ । ଫଳରେ ପାପାଇରସ ଓ ଚମଡ଼ା ଲିଖନ-ମାଧମ ଠାରୁ କାଗଜ; ଅଧିକ ପତଳା ଓ ନମନୀୟ ହେବାଦ୍ୱାରା ଲେଖନକାରଙ୍କ ମଧରେ ଅଧିକ ଆଦୃତ ହେଲା ।

୭୫୧ ମସିହାରେ ଚାଇନିଜ୍ ଓ ଆରବମାନଙ୍କ ମଧରେ ସଂଘଟିତ ଯୁଦ୍ଧରେ ଆରବୀୟମାନେ କାଗଜ ତିଆରି







କୌଶଳ ଜାଣିଥିବା କେତେଜଣ ବ୍ୟକ୍ତିଙ୍କୁ ସମରକନ୍ଦକୁ ଧରିନେଲେ । ସେହି ଚାଇନିଜ୍ ବ୍ୟକ୍ତିଙ୍କ ଠାରୁ ଆରବୀୟମାନେ ପ୍ରଥମେ କାଗଜ ତିଆରିର କୌଶଳ ଶିଖିଲେ । ସମରକନ୍ଦରୁ ବାଗଦାଦ୍ ବାଟ ଦେଇ କାଗଜ ତିଆରି କୌଶଳ ଧୀରେ ଧୀରେ ସବୁ ମୁସଲିମ୍ ଦେଶମାନଙ୍କୁ ପ୍ରସାରିତ ହେଲା । ୧୨୦୦ ମସିହା ବେଳକୁ ଆରବ ଦେଶରୁ କାଗଜ ତିଆରି କୌଶଳ ସ୍ପେନ୍ ଦେଶକୁ ଗଲା । ୧୫୦୦ ମସିହା ବେଳକୁ ସମଗ୍ର ୟୁରୋପ ମହାଦେଶରେ କାଗଜର ପ୍ରସାର ବହୁଳ ଭାବେ ହୋଇ ଛାପାଖାନାମାନଙ୍କରେ ମଧ୍ୟ ବ୍ୟବହାର ହେଲା ।

ଏବେ କାଗଜ ହେଉଛି ପୃଥିବୀର ପ୍ରମୁଖ ଲେଖନ-ଉପାଦାନ । କିନ୍ତୁ ଅବଶୋଷ କାଗଜ ଉଦ୍ଭାବନର ଏକ ହଜାର ବର୍ଷ ପର୍ଯ୍ୟନ୍ତ ଏହାର ବ୍ୟବହାର କେବଳ ଚୀନ୍ ଦେଶ ମଧ୍ୟରେ ସୀମିତ ଥିଲା । ଖ୍ରୀଷ୍ଟପୂର୍ବ ୩୦୦୦ ଠାରୁ ଏବେ ୨୦୦୦ ମସିହା, ଦୀର୍ଘ ୫୦୦୦ ବର୍ଷର ଲମ୍ବା ଲେଖନ-ଉପାଦାନର ଇତିହାସ ମଧ୍ୟରେ ପୃଥିବୀରେ ପାପାଇରସ୍ ମୋଡ଼ାର ବ୍ୟବହାର ୩୫୦୦ ବର୍ଷ ହୋଇଥିବା ବେଳେ କାଗଜର ବହୁଳ ବ୍ୟବହାର ମାତ୍ର ୫୦୦ ବର୍ଷର । ଏବେ ଇଲୋକ୍ଟ୍ରୋନିକ୍ସ ଓ ଇଣ୍ଟରନେଟର ଯୁଗ । ହାତ ଲେଖାର ଅଭ୍ୟାସ ଧୀରେ ଧୀରେ ଲୋକମାନଙ୍କ ମଧ୍ୟରେ ହ୍ରାସ ପାଇଲାଣି । ହାତଲେଖା ଚିଠି ଏବେ ଲୁପ୍ତ ପ୍ରାୟ । ଲୋକମାନେ ବିଭିନ୍ନ ପାଠ ବିଷୟକୁ ନିଜ ନିଜର ଅନ-ଲାଇନ୍ ଡାଟାବେସ୍‌ରେ ରଖିବା ଆରମ୍ଭ କଲେଣି । ଅନେକ ବିଜ୍ଞାନ ପତ୍ରିକା ଇ-ଜରନାଲ ଭାବେ ପ୍ରକାଶିତ ହେଲାଣି । ପାଠ୍ୟପୁସ୍ତକ, ଭାଷାକୋଷ ଓ ବହୁଳ ପ୍ରଚାରିତ ଓ ପ୍ରସାରିତ ବିଭିନ୍ନ ପୁସ୍ତକ 'ଇ-ପୁସ୍ତକ' ଆକାରରେ ଉପଲବ୍ଧ ହେଲାଣି । ସେହି ସବୁ ପତ୍ରିକା କାଗଜ ଓ କାଳି ବ୍ୟବହାରକରି ଆଉ ଛପା ଯାଉନାହିଁ । ସରକାରୀ ଦପ୍ତରମାନଙ୍କରେ ନଥିପତ୍ର ସବୁ କମ୍ପ୍ୟୁଟର ମାଧ୍ୟମରେ ସଂଗୃହୀତ ହୋଇ ରହିଲାଣି । ଧୀରେ ଧୀରେ ପରିବେଶ ସମସ୍ୟା ଯୋଗୁ କାଗଜ ତିଆରି ଉପାଦାନ ଯଥା : ଘାସ, ବାଉଁଶ ଇତ୍ୟାଦିର ଅଭାବ ମଧ୍ୟ ପରିଲକ୍ଷିତ ହେଲାଣି । କିଏ ଜାଣେ ଭବିଷ୍ୟତରେ ପାପାଇରସ୍ ମୋଡ଼ା, ଚମଡ଼ା ତିଆରି ବହି ଓ ତାଳପତ୍ର ପୋଥି ପରି ଦିନେ କାଗଜ ତିଆରି ବହି ମଧ୍ୟ ଇତିହାସ ନହେବ ?



ଅଧ୍ୟକ୍ଷ,
ଜାତୀୟକବି ବୀରକିଶୋର ସରକାରୀ ମହାବିଦ୍ୟାଳୟ,
କଟକ ।







# ଲେଖାର ଇତିହାସ ଓ ପୋଥିର ଉପକରଣ

ଦେବେନ୍ଦ୍ର କୁମାର ଦାଶ

It [writing] has became human knowledge's ultimate tool (science), society's cultural medium (literature), the means of demotratic and popular information (the press), an art-form itself (calligraphy) to mention only some manifestations.... Writing changes as humanity changes. It is a gauge of the human condition.

— Steven R. Fischer.

ମଣିଷର ସଭ୍ୟତା-ବିକାଶର ଏକ ପ୍ରମୁଖ ସ୍ତର ହେଉଛି ଲେଖାମାଧ୍ୟମରେ ଆପଣାର ଭାବପ୍ରକାଶ । ଲେଖା ମଣିଷର ଭାବଗତ, ସାଂସ୍କୃତିକ ଜୀବନପ୍ରଣାଳୀର ବିବର୍ତ୍ତନରେ କିଭଳି ଭୂମିକା ଗ୍ରହଣ କରିଛି, ସେହି ପ୍ରସଙ୍ଗ ଉପସ୍ଥାପନା କଲାବେଳେ ଷ୍ଟିଫେନ୍ ରୋଜର ଫିସାର ଦେଇଥିବା ଉପରୋକ୍ତ ମନ୍ତବ୍ୟକୁ ତେଣୁ ଏକ ଅତିଶୟୋକ୍ତି ବୋଲି କୁହାଯାଇ ପାରିବ ନାହିଁ । ପ୍ରାଚୀନ ପ୍ରସ୍ତରଯୁଗର ଆଦିମ ମଣିଷ ଯେ ଆଜି ସଭ୍ୟତାର ଶୀର୍ଷରେ ଆସି ପହଞ୍ଚି ପାରିଛି, ସେହି ପହଞ୍ଚିବାର ଯାତ୍ରାରେ ଏକ ପ୍ରମୁଖ ଉଦ୍ଭାବନ ଓ ସାଧନ ହେଉଛି ଲେଖା ।

ଯେତେବେଳେ ମଣିଷ କୌଣସି ଚିହ୍ନ ମାଧ୍ୟମରେ ଆପଣାର ଭାଷିକ ଅଭିବ୍ୟକ୍ତିକୁ ମୂର୍ତ୍ତ କରେ ଓ ସେହି ଚିହ୍ନସମୂହରୁ ସମାଜର ଅନ୍ୟମାନେ ସେଥିରେ ଥିବା ବକ୍ତବ୍ୟ/ ଚିନ୍ତାକୁ ପୁନର୍ଗଠନ କରିବାକୁ ସମର୍ଥ ହୁଅନ୍ତି; ସେତେବେଳେ ସେହି ଚିହ୍ନସମୂହକୁ କୁହାଯାଏ ଲେଖା । ଏହି ଲେଖାର ବିବର୍ତ୍ତନ ବହୁବିଧ ପର୍ଯ୍ୟାୟରେ ବହୁବିଧ ଉପକରଣକୁ ଆଶ୍ରୟ କରି ସଂଗଠିତ ହୋଇଛି । ଅକ୍ଷର ଉଦ୍ଭାବନ ପୂର୍ବରୁ ମଣିଷ ପ୍ରଥମେ ପଥରଗାତ୍ରରେ ଚିତ୍ର ଖୋଦେଇ କରି ଆପାଣର ଭାବନାକୁ ରୂପଦେବାକୁ ଚେଷ୍ଟା କରିଥିଲା । ଭାଷାର ବ୍ୟବହାର ପୂର୍ବରୁ ଏଭଳି ଚିତ୍ରିତ/ ଖୋଦିତ ରଚନାକୁ ଐତିହାସିକମାନେ କହିଛନ୍ତି ପ୍ରତ୍ନ-ଲେଖା ବା proto-writing । ଏହି ପ୍ରତ୍ନ-ଲେଖାର ଏକ ଚମତ୍କାର ଦୃଷ୍ଟାନ୍ତ କଳାହାଣ୍ଡିରେ ଆବିଷ୍କୃତ ଆଦିମ ଚିତ୍ରକଳା : ଗୁଡ଼ହାଣ୍ଡି । ଖ୍ରୀଷ୍ଟପୂର୍ବ ଚତୁର୍ଥ ସହସ୍ରାବ୍ଦରେ ମେସୋପଟାମିଆ, ମେକ୍ସିକୋର ମେସୋଆମେରିକା, ଇଜିପ୍ଟ ଓ ସିନ୍ଧୁସଭ୍ୟତାରେ ଲେଖାର ପ୍ରଥମ ବ୍ୟବହାର ଦେଖାଯାଏ । ପୃଥିବୀର ବହୁ ଦୂରବର୍ତ୍ତୀ ସ୍ଥାନରେ ପ୍ରଚଳିତ ଏହି ଲେଖାସମୂହର ଅଧ୍ୟୟନରୁ ଜଣାଯାଏ, ମଣିଷ ଆପଣାର ଇଚ୍ଛା ପ୍ରକାଶ କରିବାପାଇଁ କରିଥିବା ଉଦ୍ୟମ ମଧ୍ୟରେ ଏକ ସମାନ୍ତରାଳତା ପରିଦୃଷ୍ଟ । ଉପଲବ୍ଧ ଉପକରଣ ମଧ୍ୟରେ ଥିବା ତାରତମ୍ୟ ହେତୁ ଏହି ଉଦ୍ୟମ ଭିନ୍ନ ଭିନ୍ନ ମାଧ୍ୟମ ଆଶ୍ରୟ କରିବାକୁ ବାଧ୍ୟ ହୋଇଥିବା ସ୍ପଷ୍ଟ । ଏହି ସମସ୍ତ ପ୍ରାଥମିକ ଲେଖାକୁ ପ୍ରକୃତ ଲେଖା କୁହାଯିବ କି ନାହିଁ, ସେଥିପାଇଁ ଐତିହାସିକମାନଙ୍କ ମଧ୍ୟରେ ମତଭେଦ ବିସ୍ତର । ତଥାପି ଲେଖାର ଏହି ଆଦିମ ସ୍ତରରେ ଦେଖାଯାଇଥିବା ସାଧାରଣ ଲକ୍ଷଣ ହେଉଛି :

(କ) ଲେଖା-ପ୍ରଣାଳୀ ଏକାଥରକେ ଉଦ୍‌ଭାବିତ ହୋଇନାହିଁ; ଏହା ଦୀର୍ଘ ବିବର୍ତ୍ତନର ଫଳଶ୍ରୁତି;

(ଖ) ପ୍ରଥମେ ଚିତ୍ର-ରଚନା ପ୍ରଣାଳୀ ବ୍ୟବହୃତ, ପରେ ଆସିଛି ସଂଖ୍ୟାକୁ ଚିହ୍ନ ମାଧ୍ୟମରେ ପ୍ରକାଶ କରିବାର ପ୍ରବଣତା;

(ଗ) ଭାଷାକୁ ଚିହ୍ନ / ଅକ୍ଷର ମାଧ୍ୟମରେ ପ୍ରକାଶ କରିବାର ଉଦ୍ୟମ ହେଉଛି ଲେଖାର ତୃତୀୟ ସ୍ତର;

(ଘ) ପ୍ରଥମେ ଏହା ପ୍ରସ୍ତରଗାତ୍ରରେ ଖୋଦିତ ହୋଇଥିବାବେଳେ, ପରବର୍ତ୍ତୀ ସମୟରେ ଏହା ମୃତ୍‌ପାତ୍ର, ଶାମୁକାର ଖୋଳ ଆଦିରେ ଖୋଦିତ ବା ଲିଖିତ ।

ଖ୍ରୀଷ୍ଟପୂର୍ବ ତୃତୀୟ ସହସ୍ରାବ୍ଦୀ ପରେ ଅକ୍ଷର କେବଳ ଉଦ୍‌ଭାବିତ ହୋଇ ନାହିଁ — ଲେଖାପାଇଁ ବ୍ୟବହୃତ ହୋଇଛି କାଠ,







ଚମଡ଼ା ବା ଗଛର ଛାଲି । ଇଜିପ୍ଟରେ ପାପିରସ (papyrus) ନାମକ ଏକ ଜଳଜ ଉଭିଦରୁ ଏକପ୍ରକାର କାଗଜ ପ୍ରସ୍ତୁତ ହୋଇଛି ଓ ଏହି ପାପିରସରୁ ପ୍ରସ୍ତୁତ କାଗଜ ଇଜିପ୍ଟ ସହିତ ଇଉରୋପ ଓ ମଧ୍ୟ- ଏସିଆରେ ମଧ୍ୟ ଲିଖନ ପାଇଁ ବ୍ୟବହୃତ ହୋଇଛି । ପାପିରସର ମୂଲ୍ୟାଧିକ୍ୟ ଓ ଇଜିପ୍ଟର ଏକଚାଟିଆ ବ୍ୟବସାୟ ହେତୁ ତାହାର ବିକଳ୍ପ ଖୋଜା ହୋଇଛି ଓ ଚମଡ଼ା ଆଦିର ବ୍ୟବହାର ମଧ୍ୟ ବଢ଼ିଛି । ସେହି କ୍ରମରେ ଚୀନରେ ପ୍ରଥମେ ପ୍ରସ୍ତୁତ ହୋଇଛି କାଠମଣ୍ଡରୁ ପ୍ରସ୍ତୁତ କାଗଜ । ଏହି ନୂତନ ଧରଣ କାଗଜର ବ୍ୟବହାର ଚୀନରୁ ମଧ୍ୟ ଏସିଆ ଓ ଇଉରୋପକୁ ସଂପ୍ରସାରିତ ହୋଇଛି ଓ ମୁଖ୍ୟ ଲିଖନ-ମାଧ୍ୟମ ଭାବରେ ମଧ୍ୟଯୁଗରେ ଗୃହୀତ ହୋଇଚି ।

॥ ଦୁଇ ॥

ସିନ୍ଧୁ ଉପତ୍ୟକାରୁ ଉପଲବ୍ଧ ନାନା ଲିପି-ସମ୍ବଳିତ ସୀଲମୋହର, ଧାତୁଫଳକ ଓ ମୃତ-ଫଳକରୁ ମୋଟାମୋଟି ଦୁଇଟି ବିଷୟ ସ୍ପଷ୍ଟ : (କ) ଭାରତୀୟ ସଭ୍ୟତାର ପ୍ରାରମ୍ଭରୁ ସେଠାରେ ଲିଖନ-ପଦ୍ଧତିର ସୂଚନା ହୋଇଥିଲା — ଆର୍ଯ୍ୟଭାଷାର ଲୋକମାନେ ଲେଖା ସହ ଅଭ୍ୟସ୍ତ ନହେଲେବି ଦ୍ରାବିଡ଼ମାନେ ଲିପି ଉଦ୍ଭାବନ କରି ଲେଖାର ପରମ୍ପରା ପ୍ରତିଷ୍ଠା କରିଥିଲେ; (ଖ) ଲେଖାର ମାଧ୍ୟମରୂପେ ଯେଉଁସବୁ ଉପକରଣ ବ୍ୟବହୃତ ହେଉଥିଲା, ସେଗୁଡ଼ିକ ମଧ୍ୟରୁ ସ୍ଥାୟୀ ଉପକରଣ ଥିଲା ଧାତୁଫଳକ ଓ ମୃତ୍‌ଫଳକ । ଉତ୍ତର ଭାରତରେ ସିନ୍ଧୁ ସଭ୍ୟତା ଧ୍ୱଂସ ହୋଇ ଯେତେବେଳେ ଆର୍ଯ୍ୟ ଭାଷାଭାଷୀମାନଙ୍କର କର୍ତ୍ତୃତ୍ୱ ସେଠାରେ ବିସ୍ତାର ଲାଭ କଲା, ସେତେବେଳେ ଲେଖାଲେଖି ପାଇଁ ପୂର୍ବୋକ୍ତ ପୁରୁଣା ଉପକରଣ ସହିତ କେତେକ ନୂତନ ଉପକରଣ କ୍ରମଶଃ ବ୍ୟବହୃତ ହେଲା । ଏହି ସବୁ ଉପକରଣ ହେଲା : ଗଛର ପତ୍ର ଓ ଛାଲି, ପଶୁର ଚମଡ଼ା, କନାରେ ତିଆରି ପଟ୍ଟ, ଇଟା, ପଥର ଓ କାଠର ଫଳକ । ଏହି ସମସ୍ତ ଉପକରଣ ସହିତ ଶେଷରେ ସଂଯୋଜିତ ହୋଇଛି ତୂଳାରେ ପ୍ରସ୍ତୁତ କାଗଜ । ପୃଥିବୀର ଅନ୍ୟତ୍ର ଲେଖାର ଉପକରଣ ଭାବେ ଯେଉଁସବୁ ବସ୍ତୁ ବ୍ୟବହୃତ, ଭାରତରେ ସମୟକ୍ରମେ ସେହି ଭଳି ଉପକରଣସବୁ ବ୍ୟବହୃତ । ଭାରତରେ ବ୍ୟବହୃତ ଲିଖନ-ଉପକରଣ ମଧ୍ୟରେ ଗଛର ପତ୍ର ଓ ଛାଲିର ବ୍ୟବହାର ଅଧିକ ବ୍ୟାପକ । ପ୍ରାକ୍-ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀରେ ଗ୍ରୀକ୍ ପରିବ୍ରାଜକଗଣ ଭାରତରେ ଲେଖାକାର୍ଯ୍ୟରେ ତୂଳାର ପଟ୍ଟ ଓ ଭୂର୍ଜଗଛର ପତ୍ର ଓ ଛାଲି ବ୍ୟବହୃତ ହେଉଥିବାର ସୂଚନା ଦେଇଛନ୍ତି । ଆଫଗାନିସ୍ତାନ ଓ ତାହାର ନିକଟବର୍ତ୍ତୀ ଅଞ୍ଚଳରୁ ଆବିଷ୍କୃତ ବୌଦ୍ଧଶାସ୍ତ୍ରଗ୍ରନ୍ଥ ମଧ୍ୟରୁ ଅଧିକାଂଶ ଭୂର୍ଜପତ୍ରରେ ଲିଖିତ । ବହୁ ପରବର୍ତ୍ତୀ କାଳରେ କବି କାଳିଦାସ (୪ର୍ଥ-୫ମ ଶତକ) ଓ ଆଳଂକାରିକ କ୍ଷେମେନ୍ଦ୍ର (୧୧ଶ ଶତକ) ଲିଖନ-ମାଧ୍ୟମ ଭାବରେ ଭୂର୍ଜପତ୍ର ଗଛର ଛାଲି ଓ ପତ୍ର ବ୍ୟବହାର କରାଯାଉଥିବାର ସଂକେତ ଦେଇଛନ୍ତି । ଭୂର୍ଜ ଗଛ ବ୍ୟତୀତ ଅନ୍ୟ ଯେଉଁ ଗଛର ପତ୍ର ଲେଖାକାର୍ଯ୍ୟପାଇଁ ସର୍ବାଧିକ ବ୍ୟବହୃତ ହେଉଥିଲା, ତାହା ଥିଲା ତାଳଗଛ । ବାସ୍ତବରେ ଭାରତୀୟ ଲିପିକର୍ମର ଇତିହାସରେ ତାଳପତ୍ରର ଗୁରୁତ୍ୱ ସବୁଠାରୁ ବେଶି । ଲେଖାକାର୍ଯ୍ୟରେ ତାଳପତ୍ର କେବଳ ବ୍ୟବହୃତ ହୋଇନାହିଁ, ଅନ୍ୟ ଲିଖନ-ଉପକରଣଗୁଡ଼ିକର ଆକାରକୁ ମଧ୍ୟ ପ୍ରଭାବିତ କରିଛି । ଲେଖାକାର୍ଯ୍ୟ ପାଇଁ ଯେତେବେଳେ ଧାତୁଫଳକ ଓ ଅନ୍ୟାନ୍ୟ ଉପକରଣର ଆବଶ୍ୟକ ହୋଇଛି, ସେତେବେଳେ ସମ୍ପୃକ୍ତ ଉପକରଣକୁ ତାଳପତ୍ର ଦେଖାଗଲା ଭଳି ଆକାରରେ ପ୍ରସ୍ତୁତ କରାଯାଇଛି । ମଧ୍ୟ ଏସିଆ, ଭାରତର ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ଓ ପଞ୍ଜାବରେ ମିଳିଥିବା ଅନେକ ତାମ୍ରପତ୍ରର ଆକାର କେବଳ ତାଳପତ୍ର ଭଳି ନୁହେଁ, ତାଳପତ୍ର ମଧ୍ୟରେ ଥିବା ବନ୍ଧନ-ଛିଦ୍ର ଭଳି ସେଥିର ମଧ୍ୟଭାଗରେ ବନ୍ଧନ ପାଇଁ ଛିଦ୍ର କରାଯାଇଛି । ପରବର୍ତ୍ତୀ କାଳରେ ପ୍ରସ୍ତୁତ ହାତତିଆରି କାଗଜର ଆକୃତି ସହ ତାଳପତ୍ରର ଆକାର ସାଦୃଶ୍ୟ ଅତ୍ୟନ୍ତ ସ୍ପଷ୍ଟ । ଭାରତୀୟ ଲିଖନ-ଉପକରଣର ଇତିହାସରେ ତାଳପତ୍ରର ଭୂମିକା ଏହି ସବୁ ଦୃଷ୍ଟାନ୍ତରୁ ସ୍ପଷ୍ଟ ।

ଲିଖନ-ଉପକରଣ ଭାବରେ ତାଳପତ୍ର କେବେଠାରୁ ବ୍ୟବହୃତ ହେଲା, ତାହାର ସଠିକ୍ ସମୟ ନିର୍ଦ୍ଦିଷ୍ଟ କରିବା ସହଜ ନୁହେଁ । ତେବେ ଦୀର୍ଘଦିନ ଧରି ଦକ୍ଷିଣ ଓ ଉତ୍ତର ଭାରତର ଲିପିକାରଗଣ ଲେଖାକାର୍ଯ୍ୟରେ ତାଳପତ୍ର ବ୍ୟବହାର କରି ତାଳପତ୍ର-ଲିଖନର ଏକ ଆଞ୍ଚଳିକ ପ୍ରଥା ପ୍ରବର୍ତ୍ତନ





କରିଥିଲେ । ଏହିସବୁ ଚଳଣି ମଧ୍ୟରେ ସବୁଠାରୁ ଉଲ୍ଲେଖଯୋଗ୍ୟ ହେଲା: ଦକ୍ଷିଣ ଓ ପୂର୍ବଭାରତର ଲେଖନକାରଗଣ ଲୁହାରେ ତିଆରି ସରୁ ଫଳକଯୁକ୍ତ ବସ୍ତୁ ସାହାଯ୍ୟରେ ତାଳପତ୍ରରେ ସୂକ୍ଷ୍ମ ଖୋଦେଇ କରୁଥିଲେ । ଲୁହାର ଏହି ବସ୍ତୁକୁ କୁହାଯାଉଥିଲା ଲେଖନୀ । ତାଳପତ୍ରରେ ଲେଖନୀ ମାଧ୍ୟମରେ ଅକ୍ଷର ବା ଚିତ୍ର ଖୋଦେଇ କରି ସାରିଲାପରେ କାଠ କୋଇଲାର ଗୁଣ୍ଡ ବା ପତ୍ରର ରସ ଘଷି ସଂପୃକ୍ତ ଖୋଦେଇକୁ ରଙ୍ଗୀନ୍ କରୁଥିଲେ । ଉତ୍ତର ଭାରତର ଲିପିକାରଗଣ ଲେଖାକାର୍ଯ୍ୟରେ ଏକ ପ୍ରକାର କାଳିର ବ୍ୟବହାର କରୁଥିଲେ । ଲେଖି ସାରିଲାପରେ ଲେଖାର ସ୍ୱଚ୍ଛତା ଓ ଉଜ୍ଜ୍ୱଳତା ପାଇଁ ତାହା ଉପରେ ଏକପ୍ରକାର ଧଳାଗୁଣ୍ଡ ବିଛେଇ ଦେଉଥିଲେ । ଲେଖାକାର୍ଯ୍ୟରେ କାଗଜର ବ୍ୟବହାର ଫଳରେ ଉତ୍ତର ଭାରତରେ ତାଳପତ୍ରର ଏକାଧିପତ୍ୟ କ୍ଷୁଣ୍ଣ ହେଲା ସତ୍ୟ; କିନ୍ତୁ ଓଡ଼ିଶା ତଥା ଦକ୍ଷିଣ ଭାରତରେ ଦୀର୍ଘଦିନ ପର୍ଯ୍ୟନ୍ତ ଏକମାତ୍ର ଲିଖନ-ଉପକରଣ ଥିଲା ତାଳପତ୍ର । ପୋଥି କହିଲେ ଏହିସବୁ ଅଂଚଳରେ ବୁଝାଯାଏ ତାଳପତ୍ର ଉପରେ ଖୋଦିତ ପୁସ୍ତକ । ତାଳପତ୍ରର ଏହି ଗୌରବକୁ ମୁଦ୍ରଣଯନ୍ତ୍ର ନ ଆସିବା ପର୍ଯ୍ୟନ୍ତ କାଗଜ ପ୍ରତିହତ କରିପାରିନାହିଁ ।

ଲିଖନ-ଉପକରଣ ଭାବରେ ଭାରତରେ କାଗଜର ବହୁଳ ବ୍ୟବହାର ସମ୍ଭବତଃ ଦ୍ୱାଦଶ-ତ୍ରୟୋଦଶ ଶତାବ୍ଦୀରୁ ସମ୍ଭବପର ହୋଇଛି । କଥିତ ଯେ, ଏକାଦଶ ଶତାବ୍ଦୀରେ ସୁଲତାନ ମହମୁଦ ଗଜନୀ ପଞ୍ଜାବ ଓ କାଶ୍ମୀରରେ କାଗଜର ବ୍ୟବହାର ପ୍ରବର୍ତ୍ତନ କରିଥିଲେ । ବହୁପୂର୍ବରୁ କାଗଜ ଚୀନ୍‌ରେ ଉଦ୍‌ଭାବିତ ହୋଇ ସମରକନ୍ଦ ବାଟ ଦେଇ ମଧ୍ୟ- ପ୍ରାଚ୍ୟରେ ପ୍ରଚଳିତ ହୋଇଥିଲା କିନ୍ତୁ ହିମାଳୟ ଅତିକ୍ରମ କରି ଭାରତରେ ପ୍ରବେଶ କରିପାରି ନଥିଲା । ମୁସଲମାନ ଶାସନ ସହିତ କାଗଜର ବ୍ୟବହାର କ୍ରମଶଃ ସଂପ୍ରସାରିତ ହୋଇଥିଲା । ତେଣୁ ଏକାଦଶ ଶତାବ୍ଦୀରେ ମହମ୍ମଦ ଗଜନୀ ଏହାର ବ୍ୟବହାର କରିଥିଲେ ହେଁ, ବହୁଳ ବ୍ୟବହାର ପାଇଁ କାଗଜକୁ ଶହେବର୍ଷରୁ ଅଧିକ ସମୟ ଅପେକ୍ଷା କରିବାକୁ ହୋଇଛି । ତ୍ରୟୋଦଶ ଶତାବ୍ଦୀରେ ବ୍ୟବହୃତ କାଗଜ ତୁଳାରୁ ପ୍ରସ୍ତୁତ କରାଯାଉଥିଲା । ପରେ ଛିଣ୍ଡା ସିଲ୍‌କ୍ ଲୁଗା, କପଡ଼ାର ଟୁକୁରା, ଛଣ, ଘାସ ଓ ଗଛଗଛର ଛାଲରୁ ପ୍ରସ୍ତୁତ ମଣ୍ଡରୁ କାଗଜ ତିଆରି ହେଲା । କାଗଜକୁ ପୋକ ଦାଉରୁ ରକ୍ଷା କରିବା ପାଇଁ ଓ ଦୀର୍ଘସ୍ଥାୟୀ କରିବା ଉଦ୍ଦେଶ୍ୟରେ ସେଥିରେ ହରିତାଳ, ତେନ୍ତୁଳିର ମଞ୍ଜିରୁ ପ୍ରସ୍ତୁତ ଗୁଣ୍ଡ ତଥା ଲାଉର ରସ ବିଛେଇ ଦିଆଯାଉଥିଲା । ଫଳରେ ସମ୍ପୃକ୍ତ କାଗଜର ରଙ୍ଗ ଥିଲା ପ୍ରାୟତଃ ହଳଦିଆ । କାଗଜ ଉପରେ ଲେଖା ଯାଉଥିଲା କଳାକାଳିରେ । ବେଳେବେଳେ ଶୁଭର ସୂଚକ ଭାବରେ ଲାଲ୍ କାଳିର ବ୍ୟବହାର ମଧ୍ୟ କରାଯାଉଥିଲା । ଉତ୍ତର ଭାରତ ଓ ବଙ୍ଗଳାର ଅଧିକାଂଶ ପୋଥି କାଗଜରେ ପ୍ରସ୍ତୁତ । ତେଣୁ କାଗଜକୁ ଆଖି ଆଗରେ ରଖି ସେଠାରେ ଲେଖନୀ ବଦଳରେ ବାଉଁଶର କାଠି, ପକ୍ଷୀର ପର ଆଦି ବ୍ୟବହୃତ ।

ତାଳପତ୍ର, ଭୂର୍ଜପତ୍ର ବା କାଗଜ — ଯେଉଁଥିରେ ପୋଥି ପ୍ରସ୍ତୁତ ହେଉନା କାହିଁକି, ତାହାର ସଂରକ୍ଷଣ ପ୍ରାଚୀନ କାଳରେ ଥିଲା ଏକ ମୁଖ୍ୟ ସମସ୍ୟା । ତାଳପତ୍ର, ଭୂର୍ଜପତ୍ର ବା କାଗଜକୁ ଠିକ୍ ଭାବରେ ନ ରଖିଲେ ତାହାର ଦ୍ରୁତ ଅବକ୍ଷୟ ଥିଲା ଅବଶ୍ୟମ୍ଭାବୀ । ଆଧୁନିକ ଖାତା ବା ବହିକୁ ଯେଉଁ ପଦ୍ଧତିରେ ସିଲେଇ କରାଯାଉଛି, ସେଭଳି ସିଲେଇ କରିବା ପଦ୍ଧତି ଅଷ୍ଟାଦଶ ଶତକର ଶେଷଭାଗ ପର୍ଯ୍ୟନ୍ତ ପ୍ରୟୋଗ କରାଯାଇନଥିଲା । ତେଣୁ ପତ୍ରର ମଧ୍ୟଭାଗରେ ଏକ ଛିଦ୍ର କରି ଏକ ସୂତା ସାହାଯ୍ୟରେ ସମସ୍ତ ପତ୍ରଗୁଡ଼ିକୁ ବନ୍ଧା ଯାଉଥିଲା । କେତେକ କ୍ଷେତ୍ରରେ ବନ୍ଧନ ସୂତ୍ର ପାଇଁ ପୋଥିର ପତ୍ରଗୁଡ଼ିକ ମଧ୍ୟରେ ସ୍ଥାନ ଛଡ଼ା ଯାଇଥିଲେ ବି ବନ୍ଧନ ସୂତ୍ର ପାଇଁ ଛିଦ୍ର କରାନଯାଇ ପୋଥିକୁ ତଳଉପରକରି ସୂତାଦ୍ୱାରା ବନ୍ଧା ଯାଇଥାଏ । ସେପରି କ୍ଷେତ୍ରରେ ପଢ଼ିଲାବେଳେ ପତ୍ରଗୁଡ଼ିକର କ୍ରମ ରକ୍ଷା କରିବା ବହୁ କଷ୍ଟକର ହୋଇଥାଏ । ପୋଥିର ଯଥାର୍ଥ ସଂରକ୍ଷଣ ପାଇଁ ଓ ଧୂଳିମଳିରୁ ରକ୍ଷା କରିବାପାଇଁ ଶାଳ, ପିଆଶାଳ ବା ସାଗୁଆନ୍ କାଠରେ ତିଆରି ପଟା ପୋଥିର ତଳେ ଓ ଉପରେ ଦିଆଯାଇଥାଏ । ଅନେକ କ୍ଷେତ୍ରରେ ପତ୍ର ଭଳି ପଟାରେ ମଧ୍ୟ ବନ୍ଧନ-ସୂତ୍ର ପାଇଁ ଛିଦ୍ର ଥାଏ । ଏହି ପଟା ଉପରେ ବେଳେବେଳେ ପୋଥିର ବିଷୟବସ୍ତୁ ସହିତ ସମ୍ପର୍କ ଥିବା ବିଷୟକୁ ଆଧାର କରି ଚିତ୍ର ଅଙ୍କା ଯାଇଥାଏ । କାଗଜ ଓ ଭୂର୍ଜପତ୍ରର ପୋଥିପାଇଁ



କେତେବେଳେ କାଠପଟା ବଦଳରେ ଚମଡ଼ାରେ ଖୋଳ ବ୍ୟବହାର କରାଯାଏ । ପୋଥିର ଉପଯୁକ୍ତ ସଂରକ୍ଷଣ କରାଯାଇ ପାରିଲେ ତାହା ଶହଶହ ବର୍ଷ ଧରି ଅତୁଟ ଅବସ୍ଥାରେ ରହିପାରୁଥିଲା ।

ଉତ୍ତର ଭାରତ ଓ ବଙ୍ଗଳାରେ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀପରେ ମୁଖ୍ୟ ଲିଖନ ଉପକରଣ ଥିଲା ତୁଳାରୁ ତିଆରି କାଗଜ — ଏହା ପୂର୍ବରୁ ସୂଚିତ । ଏହି କାଗଜ ଉପରେ ପକ୍ଷୀ କଲମ, କାଠି କଲମ ଓ ଧାତୁନିର୍ମିତ କଲମ ସାହାଯ୍ୟରେ ଲେଖାଯାଉଥିଲା । ତାଳପତ୍ର ଉପରେ ଲେଖନୀ ସାହାଯ୍ୟରେ ଖୋଦେଇ କରାଯାଉଥିବାବେଳେ କାଗଜ ଉପରେ କାଳିରେ ଲେଖାଯାଉଥିବାରୁ ସେଭଳି ଲେଖନ-ପଦ୍ଧତି ଥିଲା ଅଧିକ ସହଜ ମାତ୍ର କମ୍ କଳାତ୍ମକ । କାଗଜ ଉପରେ ଲେଖିବା ପାଇଁ ଧାନକୁ ପୋଡ଼ି ସେଥିର ପାଉଁଶକୁ ବ୍ୟବହାର କରି କାଳି ପ୍ରସ୍ତୁତ କରାଯାଉଥିଲା ଯାହାକୁ କୁହାଯାଉଥିଲା ଭୂଷାକାଳି । କେତେକ ଗଛର ରସରୁ ମଧ କଷକାଳି ପ୍ରସ୍ତୁତ କରାଯାଉଥିଲା ।

ଓଡ଼ିଶାରେ ଏପର୍ଯ୍ୟନ୍ତ ମିଳିଥିବା ପୋଥିର ସିଂହଭାଗ ତାଳପତ୍ରରେ ପ୍ରସ୍ତୁତ । ଏହି କ୍ଷେତ୍ରରେ ଓଡ଼ିଶାର ସମ୍ପର୍କ ଦକ୍ଷିଣ ଭାରତ ସହିତ ଘନିଷ୍ଠ । କାଗଜରେ ପ୍ରସ୍ତୁତ ଓଡ଼ିଆ ପୋଥି ସଂଖ୍ୟା ଅତି ନଗଣ୍ୟ । ଏଭଳି କି କାଗଜ ଅପେକ୍ଷା ଭୂର୍ଜପତ୍ରରେ ଲିଖିତ ଓଡ଼ିଆ ପୋଥି ସଂଖ୍ୟା ଅଧିକ । ଏହାର କାରଣ କ'ଣ ହୋଇପାରେ ? ଓଡ଼ିଶା ସହିତ ଦକ୍ଷିଣ ଭାରତର ଘନିଷ୍ଠ ରାଜନୈତିକ ଓ ସାଂସ୍କୃତିକ ସମ୍ପର୍କ ନା ଅନ୍ୟ କିଛି ? କାଗଜ ସହ ମୁସଲମାନ ସଂପ୍ରଦାୟର ସମ୍ପର୍କ ଅଧିକ । ଓଡ଼ିଶାର ସାଂସ୍କୃତିକ ବିକାଶରେ ମୁସଲମାନମାନେ କୌଣସି ବିଶେଷ ଭୂମିକା ନେଇ ନଥିବା ହେତୁ ବୋଧହୁଏ କାଗଜର ବ୍ୟବହାର ଓଡ଼ିଶାରେ ବହୁଦିନ ପର୍ଯ୍ୟନ୍ତ ହୋଇନାହିଁ । ତେଣୁ ପୋଥିର ପ୍ରକାରଭେଦକୁ ଆଶ୍ରୟ କରି ଗୋଟିଏ ଜାତିର ସାଂସ୍କୃତିକ ପରିଚୟର କିଭଳି ବ୍ୟାଖ୍ୟା କରାଯାଇପାରେ, ଏହି ଘଟଣା ହେଉଛି ତାହାର ଏକ ଦୃଷ୍ଟାନ୍ତ ।

ଲିଖନ-କଳା ଓ ଲିଖନ-ଉପକରଣର ବିକାଶ ସଭ୍ୟତାର ବିକାଶ ସହ ଘନିଷ୍ଠ ଭାବେ ଜଡ଼ିତ । କାଗଜ ଓ ମୁଦ୍ରଣ-ଶିଳ୍ପର ଅଭ୍ୟାଗମ ପରେ ତାଳପତ୍ରର ପୋଥି ସଂଗ୍ରହାଳୟର ଉପକରଣ ହେବା ସ୍ୱାଭାବିକ । ପ୍ରତ୍ନତତ୍ତ୍ୱ ଓ ଇତିହାସର ଅନ୍ୟାନ୍ୟ ଉପକରଣର ବ୍ୟାଖ୍ୟା ଓ ଅନୁଶୀଳନ ଅଧାରରେ ଇତିହାସର ପୁନର୍ଗଠନ କରାଯାଇଥାଏ । ଗୋଟିଏ ଜାତିର ଇତିହାସ, ସଂସ୍କୃତିର ଅବବୋଧ ଓ ପୁନଃନିର୍ମାଣ ପାଇଁ ଲିଖନ ଉପକରଣଗୁଡ଼ିକର ଅଧ୍ୟୟନ ଏକାନ୍ତ ଆବଶ୍ୟକ ।



ବି. ୧୦୪, ଲେକ୍‌ଭ୍ୟୁ ହୋମ୍ସ
ବିଦ୍ୟୁତ୍ ମାର୍ଗ, ଭୁବନେଶ୍ୱର - ୭୫୧୦୧୨

---

**ସହାୟକ ଗ୍ରନ୍ଥସୂଚୀ :**


1. Fischer, Stevew R. 2001. *A History of Writing*, London : Reaktion Books Ltd.
2. Norman, Kenneth R. 1993. "The Developments of Writing in India and its Effect upon the Pali Canon" in *Weiner Zeitschrift fur die* Kunde Sudasiens (Vol. 36). Zurich.
3. Powell, Barry B. 2009. Writing : *Theory and the Technology of Civilization*. London : Blackwell Publisher.
4. Solomon, Richard. 1995. "On the Origin of the Early Indian Scripts" in *Journal of the American Oriental Society* (115.2)


●







# MANUSCRIPTS

*Marcel Thomas*

At the beginning of any book dealing with the evolution of printing in the West, perhaps it is worth briefly recalling the historical role of the manuscript, for so many centuries the sole written medium through which ideas found expression. It is not our intention to offer a history of the manuscript book, which would require a whole volume to itself, but rather to show how the production of manuscripts was organised from about the middle of the 13th century to the late 15th in response to growing demand, and to point out what needs the manuscript tried to fulfil up to the time when the printed book appeared and took things a stage further.

Historians have long divided the evolution of the manuscript in Western Europe into two main periods, the 'Monastic Age', and the 'Secular Age'. These terms, long current in the field, and familiar ro anyone who knows something of the subject, may be somewhat lacking in precision, but nevertheless they do express an undoubted reality. In the 700 years between the Fall of Rome and the 12th century, it was the monasteries and other ecclesiastical establishments associated with them which enjoyed an almost complete monopoly of book production and so of book culture. It is also true that from the end of the 12th century a profound transformation took place. The social and intellectual changes which are particularly clearly reflected in the founding of the universities and the development of learning among the laity, and which occurred at the same time as the bourgeoisie emerges as a class, had profound repercussions on the ways in which books came to be written, copied and distributed.

In this short survey we will ignore the Monastic Age which has been the subject of many recent and excellent studies. Our intention is to show (in so far as the surviving evidence makes it possible, for many of the problems relating to our subject are still far from being solved) how, from the 13th century onwards, new organisational structures made it possible to satisfy, more or less, the new requirements for books expressed by a steadily growing number of clients.

Although it is impossible to draw up an accurate list of centres of manuscript book production or furnish details of the output of a particular region at a particular time, we can at least give a reasonably accurate impression of the conditions under which books were made and disseminated in the 13th, 14th and 15th centuries. We will not summarise here even the most important features in the evolution of the manuscript book, we will only describe the situation that had developed at the time when printers placed their new techniques of manufacture at the disposal of book producers.







In the Secular Period, if we leave aside changes in the presentation and decoration of books only small technical improvements can be said to have taken place. But one innovation must be mentioned because it had important effects both upon their manufacture and upon their price, namely the introduction of paper. It did not replace parchment, but supplemented it and made possible the production of less expensive books alongside the traditional luxury manuscripts, though the difference in price was not as great as is sometimes thought. It also made possible the production of books in greater numbers than before.

We [know] how paper making made printing possible. As far as the manuscript goes, paper did not offer advantages over parchment apart from its lower price and the possibility of producing it in unlimited quantity, in theory at least. Medieval paper was more fragile than parchment, had a rougher surface and was less imprervious to ink and less amenable to the pigments used by the illuminators. On the other hand it was lighter in weight. But less than might be imagined, since parchment of great delicacy was being produced in the 13th century, even thinner than the paper of the same period. For example many small Bibles of that date were, thanks to the joint skills of parchmenter and copyist, actually less bulky than the two-volume modern translation by Lemaistre de Sac. Admittedly it requires keen eyesight to read them now, and the eyes need to be accustomed to the handwriting. But there is no doubt that these small Bibles were less cumbersome than the more famous early printed Bibles, and in fact portable printed Bibles were not produced until the 16th century.

Although the main advantage of paper was its low cost and, by the 15th century, its relative abundance, it is not easy to make exact comparisons with parchment or vellum. While we possess many manuscripts which mention the price of vellum and accounts (usually royal accounts) which record the purchase of vellum and paper, the significance of the terms used is not always clear. Vellum was generally bought by the bundle (usually a dozen and a half whole skins), or by the dozen skins, or by the individual whole skin, or by the *cahier*, that is, already cut and folded into booklets of six or eight leaves. When *cahiers* are mentioned in accounts we have no way of knowing their dimensions or even the number of pages, and so we can draw no firm conclusions about costs.

At the end of the 14th century the price of skins varied between 12 and 20 deniers in Paris. The average area of a skin being about 1/2 a square metre, ten to twelve were needed to make a volume of 150 leaves measuring 24 cm x 16 cm, typical dimensions of a manuscript book in the 14th-15th centuries. The raw material from which such a book was made could thus be worth anything fom 10 to 20 sous in its crude state and to this we would have to add 4 to 6 deniers for preparing it, i.e. clearing the surface of the remaining bristles and of other blemishes to render it fit to write on. Even these figures are only an indication, since prices varied so much







depending on the quality of the skin, the supplies available, and the region in which it was sold. At Paris, the Lendit Fair was an important centre for the sale of vellum.

A simple calculation will be sufficient to demolish the stories so often told about the fabulous numbers of sheep and calves required to make a single book. Even modern works of scholarship continue to repeat these old errors. Thompson, for example, quotes an order by the Countess of Clare in England in 1324 for a copy of the *Vitae Patrum*, for which no fewer than 1,000 skins were allegedly required. At the current price of 2 pennies per skin, the vellum alone would have cost the fabulous sum of £ 6. In fact an examination of the *Vitae Patrum*, whether in Latin or in one of the contemporary French versions, quickly shows that when written in two columns the text generally fills about 150-160 leaves of 25 cm x 16 cm or a total area amounting to no more than 6 square metres– a dozen skins at the most.

At about the same time Treasury accounts show that the price of paper was 2 sols 6 deniers for a quire of 'petite forme' (i.e. about 50 cm x 30 cm), which would be a denier and a half for a leaf measuring 0.15 metres square, while vellum, as we have seen, was worth a maximum of 24-26 deniers for a skin measuring 0.5-0.6 metres square, including the cost of shaving and preparation. While the difference is certainly appreciable, it is far from attaining the importance once assigned to it. In fact, until the 15th century paper did not seem to possess sufficient advantages, or perhaps was not marketed in large enough quantities, to supplant parchment.

But was there an abundant supply of parchment ? In France as in England its price remained reasonably stable from the second half of the 14th to the first half of the 15th century, when book production was increasing rapidly and this seems to prove that it was not such a rare commodity. It would be interesting to study the number of livestock and of sheep in particular, to see if there was a corresponding increase over the same period. We do know that 300 years later, when vellum was no longer in general use, except in the copying of legal documents and for some industrial purposes, more than 100,000 bundles a year, each containing 40 skins, were sold in France.

All of which does not mean, of course, that printing could have developed the way it did without paper. Even if a leaf of vellum would have passed through the press easily, the smallest edition of a work would have consumed several hundred skins, even for a book of small format. For larger sizes, thousands of skins would have been required. Aloys Ruppel calculated that each volume of the Gutenberg Bible that was printed on vellum must have required 170 skins (340 leaves measuring 42 cm x 62 cm). The 30 or so copies produced in this way, therefore, would have needed 5,000 skins. For the 100 copies printed on paper the equivalent on vellum would have used up 15,000 skins. Under such circumstances we can only wonder that so many luxury editions were printed on vellum in the 15th and 16th centuries,







even though many were Books of Hours of small size.

Monasteries in the Secular Period continued to copy the manuscripts they needed for their own use, just as they had done in the 'monastic' period. The rules of the monastic orders prescribed a certain number of hours each day for intellectual work, and copying was an important part of this. Organised on traditional lines, the scriptoria produced works of learning and service books, and went on doing so until printing finally relegated the manuscript to the past– and indeed beyond, for, as much from tradition as necessity, monasteries still continued to copy missals, antiphonaries and breviaries until well into the 16th century. The predominant feature of the new period which began at the beginning of the 13th century was that the monasteries were no longer the sole producers of books of all kinds and henceforth scarcely produced more than were needed for their own use.

Intellectual life was now centred outside the monasteries, and it was in the universities that scholars, teachers and students, working in cooperation with artisans and craftsmen, organised an active book trade.

Occasionally, and up until a later date in England than in France, a monastery where the art of calligraphy or illumination was particularly well preserved would still be approached by a monarch or nobleman with a request for a deluxe manuscript. The sale of these was a source of income to the abbeys, but the practice grew rarer and rarer. John Lydgate, poet and monk of Bury St. Edmunds, who composed and copied texts in English which he sold to laymen until his death in 1446, was an exceptional case.

From the early 13th century, and even from the end of the 12th, the foundation of the new universities gave rise to a new reading public. The new readers were, it is true, still chiefly clerics; but for as long as they were at university they were closely attached only to their college, their *alma mater*, and not to any other religious community.

The professors needed texts for their courses, along with works of reference, and commentaries. In medieval education the gloss or commentary on well established authorities was all important in every field of learning. It was therefore indispensable for them to have these works conveniently to hand, and the university would have to provide a library where they could consult them. But it was not always possible to secure texts already in existence, and so the need arose for the establishment of workshops where professional craftsmen, employed by the university, could copy essential texts expeditiously and cheaply.

This did not exclude the use of libraries which existed outside the university, where many rare and useful works could often be found. The loan of books had long been an established practice in the Middle Ages, and various church foundations, such as monasteries and chapters, loaned out works which they would not have agreed definitively to





relinquish by selling them to the new university libraries.

Despite the importance of oral instruction, the students too required a few essential books. Even if, for much of the time, they took notes at lectures and trusted to their memory, which medieval methods of education must have served to develop considerably, they still needed some basic books. If they had no time to copy them for themselves and were rich enough to have it done for them, they could order them from professional copyists, who appeared in increasing numbers around the universities. In each university town a Guild of Scriveners or Stationers came to be formed, consisting of clerks in holy orders and also often of laymen: the booksellers were laymen, while the scriveners were usually clerks. Both were assimilated into the university as a clerical branch and enjoyed certain privileges: in particular exemption from some taxes and from duties of watch and ward, together with the right to be tried by the university courts (this being the privilege of *committimus* which goes back in their case to the beginning of the 13th century).

As the price for their privileges, the booksellers, copyists and 'stationers' (the term dates back to classical antiquity and was first revived in the Italian universities) had to accept strict control by the university. As the servants of a body of scholars which extended its protection over them, they were not free, as ordinary craftsmen were, to work for themselves. The way their work was organised was a constant reminder that they were carrying out what we should call 'a service'.

Numerous documents, the chief ones dated 1275, 1302, 1316, 1323 and 1342, give us a fairly precise idea of their duties. They were appointed after a preliminary enquiry to confirm their good standing and professional ability, and they had to furnish guarantees and take an oath in the presence of the university authorities. Once installed, their duties were strictly laid down and their activities controlled. The booksellers were not so much retailers as custodians of books. Because of their scarcity, manuscripts were sold and resold through successive generations of students and teachers. This second-hand market employed the book-seller, who was usually no more than an agent for the vendor, as an intermediary. The security he had to pledge to get his appointment guaranteed his solvency. He could buy and sell only under certain conditions. He had to advertise publicly the titles he held in stock to prevent his making a profit out of an artificial scarcity. And he was remunerated for his labours according to a fixed rate of commission, not being allowed to charge more than 4 deniers for the sale of a volume if the purchaser was a student or teacher at the university, 6 deniers if he was not.

Alongside the booksellers who simply sold books or acted as intermediaries in the sale of books, there were the 'stationers', whose role was more complicated and whose functions have recently been made clearer by the remarkable work of Father Destrez. Thanks to him we now know in some detail the mechanism of the 'taxation' of copies and of the circulation of the



'exemplaria' and, in general, of the institution of the *pecia* or the loan of sections of books.

To keep proper intellectual as well as economic control over the use of books, the authorities required all essential works to be scrupulously checked for textual correctness so that no errors might slip in, distorting the sense. To assure the reproduction of copies under the best conditions, so that the text would be unaltered and the copyists could not make unjustified profits, the universities devised an ingenious system. Manuscripts were loaned which had been carefully checked and revised. From them copies could be made and charged for according to a fixed tariff or 'tax'. The original text (the 'exemplar') was returned to the stationer after copying, and he could hire it out again. This method prevented the corruption of the text, which could othewise become worse with every copy made, since by this method each copy was made from the same original. Anyone who has had to study the transmission of ancient texts will understand what a good idea this was.

The stationers, apart from multiplying copies themselves, loaned the copy-text or exemplar to students who either wished to copy it or have it copied by the authorised copyists. It did not go out as one book, but in quires *(peciae)*, so that several copyists could be making copies from the same manuscript simultaneously. The hiring charge for each quire was determined by the university, and stationers were forbidden to increase it. Moreover they had to loan them to anyone wanting to copy them. If an exemplar was known to be imperfect it was withdrawn from circulation. A number of exemplars have come down to us, often written in a large hand and very worn because of constant use. Since they were made to a consistent standard they had the added advantage of providing a reliable measurement of the quantity of text that a copyist had transcribed, and so made it easier for clients and authorised copyists to agree on a prlce.

The system thus established for the multiplication of texts lasted until the close of the Middle Ages. In Paris, for example, it was within the framework of such an organisation that printing was introduced, under the auspices of the university. As far as the authorities were concerned, the printing press simply represented a handy means of multiplying indispensable texts even more rapidly and accurately than was possible under the *pecia* system.

The first Paris presses, as we shall see, were set up not so much to turn out the basic university texts of the Schoolmen as to produce a plentiful supply of the classical authors, and the examples of a pure Latin prose style which were particularly in demand. The *pecia* system seems to have answered most normal requirements quite easily. Even before scribal workshops were fully developed in the late 12th and early 13th centuries, Latin texts of Aristotle had spread across Europe, more than 1,000 copies of Aristotle's works have come down to us from the 13th and 14th centuries. If we include those that have disappeared, it is evident that the works of an author of his standing were widely





known and that, if the spread of ideas was slow, it was nonetheless effective. The role of memory must not be underestimated in all this. Teaching was conceived in such a way that it could not but develop the memory. Remember that even now a Muslim child of 12 is supposed to be able to recite the whole of the Koran by heart, surprising though it might seem to us.

Still, it was difficult to assemble all the books needed for research. While Raoul de Presles was preparing his translation of *The City of God*, he collated no fewer than 30 manuscripts and 100 different works to compose his commentaries, in order to make his edition as 'critical' as possible. But a note found in a manuscript of the 14th century testifies to the difficulties encountered in the search for a given text: 'I have handed over 14 sols to the scribe who wrote this and 10 deniers to the inn-keeper, and to the person who found the exemplar for me in the inn, 2 sols'. This tip for the person who told him of a copy to be found in an unexpected place recalls the book expeditions of Richard de Bury, author of the *Philobiblion*. We need not exaggerate, however, the difficulties of scholars in the 14th or 15th century; it was simply that texts were much scarcer than they were to be after printing took over. The information we have about libraries in the 15th and 16th centuries gives us an idea of how the situation improved.

While new methods were being used in the universities to supply as many of the required 'learned' works as possible, there remained the problem of producing popular or recreational literature. A new reading public emerged in the late 13th century, with the slow and gradual change from feudalism. A bourgeois class was appearing alongside the nobility and the clergy, equally capable of developing a literary culture. Lawyers, lay advisers at Court, state officials and, later on, rich merchants and town citizens—all needed books, not only in their own subjects like law, politics or science, but also works of literature, edifying moral treatises, romances and translations. This kind of material was not intended for clerics, although they were sometimes the authors, and usually it was in the vernacular. Original works, at first in verse, then prose, adaptations of outdated works and translations of Latin or medieval classics were soon produced. To distribute them, and satisfy the demands of a growing reading public, required a reorganisation of the book trade.

Any history of French literature will confirm that writings in the French language were already extant by the 12th century. But the means of dissemination were a different matter. The literature of the day was meant above all to be recited or read aloud to an audience, since the reading public was not large enough to warrant any other form of publication. It may seem surprising that a large body of traditional literature could develop in such conditions. We are so permeated by our written culture that it is not easy to make the effort of imagination needed to understand the manner in which oral culture perpetuates itself, despite the fact that we have evidence on the subject. from many



write the Gitagovinda together with commentary and pictures in the 39th anka of Raja Mukunda Deva on Thursday in asvina month. Means the period of this Mss. 28th August, 1688 as per the colophon.

ପୂର୍ବରୁ ଉଲ୍ଲେଖ କରିଛି ଅଧିକାଂଶ ଚିତ୍ରପୋଥିର ସମୟ ଅନିରୂପିତ । କିନ୍ତୁ ଧନଞ୍ଜୟ ନିଜ ଟୀକାର ସମୟ ନିର୍ଦ୍ଦେଶ କରିଥିବା ଯୋଗୁଁ ଚିତ୍ରଗୁଡ଼ିକର ପ୍ରାଚୀନତା ସଂପର୍କରେ ଆମେ ଅବହିତ ହେଉ । ସଂଗ୍ରହାଳୟରେ ସଂରକ୍ଷିତ ଅନ୍ୟାନ୍ୟ ଚିତ୍ରପୋଥିଗୁଡ଼ିକ ଏହା ତୁଳନାରେ ଅର୍ବାଚୀନ ମନେ ହୁଅନ୍ତି । ସୁତରାଂ ଧନଞ୍ଜୟଙ୍କ ଏହି ସଟୀକ ଓ ସଚିତ୍ର ଗୀତଗୋବିନ୍ଦ ପୋଥି ହିଁ ପ୍ରଥମେ ଆଲୋଚନା କରାଯାଇପାରେ । ଏକଥା ଏଠାରେ ସମସ୍ତେ ଜାଣନ୍ତି ଯେ, ଗୀତଗୋବିନ୍ଦ ହେଉଛି ଭକ୍ତି ଏବଂ ଶୃଙ୍ଗାରୀ ନାନ୍ଦନିକତାର ଏକ ଅନୁପମ ଅକ୍ଷରକୀର୍ତ୍ତି ।



(ଗୀତଗୋବିନ୍ଦ ଚିତ୍ର)

ଏକଥା ସ୍ୱୀକାର୍ଯ୍ୟ ଯେ, କୌଣସି କଳା (ନୃତ୍ୟ, ନାଟକ, ସଂଗୀତ, ସାହିତ୍ୟ, ଚିତ୍ର, ସ୍ଥାପତ୍ୟ ଇତ୍ୟାଦି) ସମକାଳୀନ ସାଂସ୍କୃତିକ ଓ ସାମାଜିକ ଉତ୍ପାଦନ ଏବଂ କଳାର ଏହି ପ୍ରତ୍ୟେକ ପ୍ରରୂପର ସଂରଚନାରେ ରୂପ ଓ ରସ ବା ଭାବଗତ ସାଦୃଶ୍ୟ ଲକ୍ଷ୍ୟ କରାଯାଏ, ଅର୍ଥାତ୍ ଗୋଟିଏ ମାଧ୍ୟମରେ ଅନ୍ୟକୁ ଜାଣିହୁଏ, ଅନୁଭବ କରିହୁଏ । ଏହି ତତ୍ତ୍ୱ ଆଧାରରେ ଉଷାଭିଳାଷର ରଚନା ବୈଚିତ୍ର୍ୟର ମୂଲ୍ୟାଙ୍କନ କରାଯାଇପାରେ ।

ଏହି କାବ୍ୟ ତିନିଗୋଟି ଭାବାଦର୍ଶର ନାନ୍ଦନିକ ଅକ୍ଷରାୟନ । ଆଳଙ୍କାରିକ ଭାଷାପ୍ରୟୋଗ ବ୍ୟଞ୍ଜନାଧର୍ମୀ ବାକ୍ ଚାତୁରୀ ଏବଂ ଶୃଙ୍ଗାରରସର ଉଚ୍ଛଳ ଅଭିପ୍ରକାଶ । ଭାରତୀୟ ଅଳଙ୍କାର ଶାସ୍ତ୍ରରେ ବୈଦର୍ଭୀ ରୀତିକୁ ଶୃଙ୍ଗାରରସ ଉପଯୋଗୀ କୁହାଯାଇଚି । ଫଳତଃ, ଏହି କାବ୍ୟର ଭାଷା ହୋଇଛି ଚେଷ୍ଟାକୃତ ଅଳଂକାର ରହିତ, ଆନୁପ୍ରାସିକ ଅଥଚ ଚିତ୍ତପ୍ରସାରୀ । ଏଥିରେ କ୍ଲିଷ୍ଟପଦ କିମ୍ବା ଅର୍ଥାଳଙ୍କାରର ପ୍ରୟୋଗ ଦୁର୍ଲଭ । ପୁନଶ୍ଚ କବି ଆପଣାର ଅନୁଭବକୁ ମାତ୍ର ତିନିଗୋଟି ଅଳଙ୍କାର, ଯଥା - ରୂପକ, ଉପମା ଓ ଉତ୍ପ୍ରେକ୍ଷା ମାଧ୍ୟମରେ ପ୍ରକାଶ କରିଛନ୍ତି ଏବଂ ଏଗୁଡ଼ିକ ମଧ୍ୟରେ ବ୍ୟତିରେକ, ବିଭାବନା ଓ ଅତିଶୟୋକ୍ତି ପରି ଅନ୍ୟ ଅଳଙ୍କାରଗୁଡ଼ିକ ବ୍ୟଞ୍ଜିତ । ପୁନଶ୍ଚ ଭାରତୀୟ ନନ୍ଦନଶାସ୍ତ୍ରବିତ୍‌ମାନେ ଧ୍ୱନିକାବ୍ୟକୁ ଉତ୍ତମ କାବ୍ୟର ମାନ୍ୟତା ଦେଇଛନ୍ତି ଏବଂ ବ୍ୟଞ୍ଜନା ହିଁ ଏହି ଜାତୀୟ କାବ୍ୟ ସୌନ୍ଦର୍ଯ୍ୟର ଆଧାରଶିଳା । ଉଷାଭିଳାଷ ପଢ଼ିଲାବେଳେ ଯେ କୌଣସି ପାଠକର ବ୍ୟକ୍ତିସତ୍ତା, କବିସତ୍ତା ସହିତ ସୂତ୍ରାୟିତ ହୋଇଯାଏ । ଏହି ସୂତ୍ରାୟନର ରହସ୍ୟ, ଭାବ - ପ୍ରକାଶରେ ବ୍ୟଞ୍ଜନାର ଚମତ୍କାରିତା । ଅଭିବ୍ୟକ୍ତିକୁ ଅଧିକ ସଂରଶୀଳ କରିବା ଉଦ୍ଦେଶ୍ୟରେ ମଧ୍ୟ କବି ସଂଗୀତାଶ୍ରୟୀ ହୋଇଛନ୍ତି ଏବଂ ସଚେତନ ଭାବରେ ଆଖ୍ୟାନ ଅନୁରୂପ, ରାଗ ଓ ବାଣୀ, ଯଥା,- ମାଳବ, ନଳନୀଗୌଡ଼ା, ମଙ୍ଗଳଧନାଶ୍ରୀ, ମଙ୍ଗଳଗୁଜ୍ଜରୀ, ଆହାରୀ, ଚୋଖୀ, କେଦାର ବଙ୍ଗଳାଶ୍ରୀ, ଆଷାଢ଼ଶୁକ୍ଳ(ବାଣୀ) ବିଚିତ୍ର ଦେଶାକ୍ଷ, ଚିନ୍ତାଭୈରବ ଆଦିର







ଆଶ୍ରୟ ନେଇଛନ୍ତି ଏବଂ ଏଥିପାଇଁ ପରବର୍ତ୍ତୀ ସମୟର କବିମାନେ ଏହାର ପାଦଗୁଡ଼ିକୁ ବାଣୀଭାବରେ ଗ୍ରହଣ କରିଛନ୍ତି ।

ଉଷାଭିଳାଷ ପଢ଼ିଲାବେଳେ ଯେ କୌଣସି ପାଠକ ଏହାକୁ ଶୃଙ୍ଗାରଧର୍ମୀ କହିବାକୁ କୁଣ୍ଠିତ ହେବନାହିଁ । ସାଧାରଣତଃ କାବ୍ୟର ଆଖ୍ୟାନ ପୁରାଣାଶ୍ରୟୀ ଏବଂ ଆଖ୍ୟାନ ଓ ଚରିତ୍ରମାନଙ୍କ ମାଧ୍ୟମରେ ଆପଣା ଆଦର୍ଶ ପ୍ରତିଷ୍ଠା ହିଁ କାବ୍ୟକାରଙ୍କ ଭିତିରି ଉଦ୍ଦେଶ୍ୟ । ଫଳତଃ, କାବ୍ୟଗୁଡ଼ିକୁ ପଢ଼ିଲାବେଳେ ପାଠକ ଆପଣାର ଅନ୍ତରଙ୍ଗ ଅନୁଭବ ମାଧ୍ୟମରେ ଅନ୍ୟ ଏକ ଅନନୁଭୂତ (ଦିବ୍ୟ ଓ ରହସ୍ୟାପ୍ଲୁତ କୁହାଯାଇପାରେ) ଇଲାକାରେ ଅପଣାକୁ ଆବିଷ୍କାର କରିବାରେ ସମର୍ଥ ହୋଇଥାଏ । କାଳିଦାସ, ଶ୍ରୀହର୍ଷ ଓ ଜୟଦେବ ଆଦି ସଂସ୍କୃତ କବିମାନଙ୍କ କାଳଜୟୀ କୃତିଗୁଡ଼ିକ ଏହି ଭାବାଦର୍ଶର ଅଭିବ୍ୟକ୍ତି । ଉଷାଭିଳାଷ କାବ୍ୟକୁ ଆମେ ଏହି ପ୍ରବାହର ଅନ୍ୟ ଏକ ପ୍ରତୀକ କହିପାରିବା । ଅଖ୍ୟାନରେ ଶ୍ରୀକୃଷ୍ଣ ଅଛନ୍ତି, ଶିବ ବି ଅଛନ୍ତି ଏବଂ ଶିବଙ୍କ ବରରେ ତ୍ରିପୁରବିଜୟୀ ବାଣାସୁର ବି ଅଛନ୍ତି । ଶିବଶକ୍ତି ଓ ବିଷ୍ଣୁଶକ୍ତି ମଧ୍ୟରେ ଅବଶ୍ୟ ଯୁଦ୍ଧ ହୋଇଛି ଏବଂ ବିଷ୍ଣୁ ଶକ୍ତି ବିଜୟୀ ହୋଇଛି । ମାତ୍ର ଏହି କାବ୍ୟର ପାଠକ ଶୈବ ଅଥବା ବୈଷ୍ଣବଧର୍ମର ତତ୍ତ୍ୱ ନୁହେଁ, ଉଷା ଓ ଅନିରୁଦ୍ଧଙ୍କ ଜୀବଚର୍ଯ୍ୟା ଭିତରେ ଆପଣାକୁ ଯଥାର୍ଥତଃ ଅନୁଭବ କରେ । ଉଷା-ବାଣାସୁର ନନ୍ଦିନୀ, ମୁଗ୍ଧା ନାୟିକା ଏବଂ ଅନିରୁଦ୍ଧ ଶ୍ରୀକୃଷ୍ଣଙ୍କର ନାତି, ଅନୁକୂଳ ନାୟକ । ସେମାନେ ସବୁ ମଣିଷଙ୍କ ପରି ପୃଥିବୀରେ ଜନ୍ମ ହୋଇଛନ୍ତି । ସେମାନଙ୍କୁ ଯୌବନ ଛୁଇଁଛି ଏବଂ ଏହି 'ଛୁଆଁ'ର ସୁଆଦଚାଖିବା ପାଇଁ ଜଣେ ଆଉଜଣଙ୍କୁ ଖୋଜିଛି । ସେମାନେ ସପନରେ ପରସ୍ପରକୁ ଭେଟିଛନ୍ତି, ପରସ୍ପର ସହିତ ମିଳିତ ହୋଇଛନ୍ତି, ସପନକୁ ସତ କରିବାପାଇଁ ବ୍ୟାକୁଳ ହୋଇଛନ୍ତି । ସାମାଜିକ ଓ ସାଂସ୍କୃତିକ ବିଧି ସେମାନଙ୍କ ସହଜ ମିଳନରେ ବାଧକ ହୋଇଛି । ବାଧା ସେମାନଙ୍କୁ ଯନ୍ତ୍ରଣା ଦେଇଛି । ଶେଷରେ ସକଳ ଆକଟ ଅତିକ୍ରମ କରି ସେମାନେ ପୁନଃ ମିଳିତ ହୋଇଛନ୍ତି । ଅର୍ଥାତ୍ ସେମାନଙ୍କ ସମ୍ମିଳନ ସମାଜିକ ସ୍ୱୀକୃତି ପାଇଛି । ଓଡ଼ିଆ ମଧ୍ୟଯୁଗୀୟ କାବ୍ୟର ଏହା ଏକ ସୂକ୍ଷ୍ମ ଓ ସ୍ୱଚ୍ଛ ରେଖାଚିତ୍ର । ମାତ୍ର କବିମାନେ ପୁରୁଷ ଓ ନାରୀର ଶାରୀରିକ ବିବର୍ତ୍ତନ ତତ୍‌କୈନ୍ଦ୍ରିକ ମାନସିକ ବିହ୍ୱଳତାକୁ ବ୍ୟକ୍ତ କରିବାପାଇଁ ଆପଣ ଆପଣାର ସମଗ୍ର ସୃଜନଶୀଳତାକୁ ଖଟଣି କରିଛନ୍ତି । ଫଳତଃ, ଶରୀର ସୌନ୍ଦର୍ଯ୍ୟ ଓ ଚର୍ଯ୍ୟା ସ୍ୱତଃ କାବ୍ୟର ଆଖ୍ୟାନ ଭାବକୁ ଗୌଣ କରିଦେଇଛି । ଶିଶୁଶଙ୍କର ଏହି କାବ୍ୟାଦର୍ଶର



(ଉଷାଭିଳାଷ ଚିତ୍ର)

ଅନ୍ୟତମ ମୁଗ୍ଧ ଅବଗାହୀ । ତେଣୁ ସେ ଆଦୌ ଦ୍ୱିଧାଗ୍ରସ୍ତ ନହୋଇ, ଉଷାଙ୍କ ନବଯୌବନ ପ୍ରାପ୍ତି ଓ ସ୍ୱପ୍ନରେ ଉଷା-ଅନିରୁଦ୍ଧଙ୍କ ସମ୍ଭୋଗ ଓ ସମ୍ଭୋଗାନ୍ତ ଶାରୀରିକ, ମାନସିକ ଅବସ୍ଥାର ଶବ୍ଦଚିତ୍ର ଆଙ୍କିଛନ୍ତି । ଏହି ଚିତ୍ର ପାଠକ କି ଶ୍ରୋତାଙ୍କୁ ମାନସିକ ସ୍ତରରେ ଉଗ୍ର କିମ୍ବା ହିଂସ୍ର କରେ ନାହିଁ, ବରଂ ସେମାନଙ୍କ ଅନୁଭବକୁ ଉଚ୍ଚକିତ କରେ । ସେହି ନ୍ୟାୟରେ, ଆମେ ଶିଶୁଶଙ୍କରଙ୍କୁ, ଯଥାର୍ଥତଃ, ଜଣେ 'ଶୃଙ୍ଗରୀଚେତା' କବି କହିପାରିବା ଏବଂ ଏକଥା ବି ସ୍ୱୀକାର କରିବା, ଆମେ ଉଷା ଓ ଅନିରୁଦ୍ଧଙ୍କର ଜଣେ ଦୃଶ୍ୟମାନ ପ୍ରତୀକ । ଚିତ୍ରକାର ବିଷୟବସ୍ତୁକୁ ରେଖା ଓ ରଙ୍ଗ ରହସ୍ୟରେ ଯେଉଁଭଳି ରହସ୍ୟାପ୍ଲୁତ କରିଛନ୍ତି, ତାହା







ବାସ୍ତବିକ୍ ଓଡ଼ିଶୀ ଚିତ୍ରକଳାର ଚରମ ଉତ୍କର୍ଷ ପ୍ରତିପାଦନ କରେ । ଏହି ଦୁଇଟି ବ୍ୟତୀତ ଅନ୍ୟଯେଉଁ ଚିତ୍ରପୋଥି ରହିଛି କେତେଗୁଡ଼ିଏ ଅର୍ବାଚୀନ ଏବଂ କେତେକ ପୁରାତନ । ଅର୍ବାଚୀନ ପୋଥିଗୁଡ଼ିକରେ ନିପୁଣହସ୍ତର କଳାକାରିଗରୀ ଦେଖିବାକୁ ମିଳେ ନାହିଁ । କିନ୍ତୁ ପୁରାତନ ପୋଥିଗୁଡ଼ିକରେ ରେଖାବିନ୍ୟାସ, ରଙ୍ଗ ପ୍ରଲେପର ଚମତ୍କାରିତା ଯେକୌଣସି ଅରସିକକୁ ମଧ୍ୟ ରସସିକ୍ତ କରିବ ।

## ତାଳପତ୍ର ପୋଥିର ସଂରକ୍ଷଣ ପଦ୍ଧତି :

ତାଳପତ୍ର ପୋଥି ଓଡ଼ିଆ ସଂସ୍କୃତି ଓ ପରମ୍ପରାର ମୂକସାକ୍ଷୀ । ଆମ ସଂସ୍କୃତି ଓ ପରମ୍ପରାକୁ ବଞ୍ଚାଇ ରଖିବାକୁ ହେଲେ ତାଳପତ୍ର ପୋଥିକୁ ବଞ୍ଚେଇ ରଖିବାକୁ ପଡ଼ିବ । ସେଗୁଡ଼ିକୁ ଧ୍ୱଂସାଭିମୁଖ୍ୟରୁ ରକ୍ଷା କରିବା ଆମର କର୍ତ୍ତବ୍ୟ । ଆମେ ଯଦି ଉଚିତ୍ ପୂର୍ବ ସାବଧାନତା ଏବଂ କେତେକ ସହଜ ନୀତି ଅବଲମ୍ବନ କରିବା, ତାହାହେଲେ ଏହି ତାଳପତ୍ର ପୋଥିଗୁଡ଼ିକ ସଂରକ୍ଷିତ ହୋଇପାରିବ ।

ବିଜ୍ଞାନର ଅଗ୍ରଗତି ପୂର୍ବରୁ, ତାଳପତ୍ର ପୋଥିର ସଂରକ୍ଷଣ ଯେପରି ଓଡ଼ିଶାର ଘରେ ଘରେ ହେଉଥିଲା ତାହା ପ୍ରକୃତରେ ଅଭିନବ ।

୧। ଫଗୁଣ ଓ ଚୈତ୍ର ମାସରେ ତାଳପତ୍ର ସଂଗ୍ରହ କଲେ, ସେହି ପତ୍ରର ସ୍ଥାୟିତ୍ୱ ଅଧିକ ।

୨। ଶରତ ଋତୁରେ ସୂର୍ଯ୍ୟ କିରଣରେ କୀଟନାଶକ ଗୁଣ ଥିବା ହେତୁ, ସେହି ସମୟରେ ପୋଥିଗୁଡ଼ିକ ଖରାରେ ଶୁଖାଇଲେ ତାହାର ସ୍ଥାୟିତ୍ୱ ବଢ଼େ ।

୩। କଚରଙ୍ଗା, କେଶୋଦରା ଇତ୍ୟାଦି ଗଛର ପତ୍ରରୁ ରସ ତିଆରି କରି, ଷଢ଼େଇ କଳାକୁ ପୋଲାଙ୍ଗ ତେଲ ସାହାଯ୍ୟରେ ମିଶ୍ରଣ କରି, ତାକୁ ଲେପ ଦେଲେ ତାହା ଅକ୍ଷର ସବୁକୁ ଉଜ୍ଜଳ ରଖିବା ସହ ତାଳପତ୍ରକୁ କୀଟଦ୍ରଂଷ୍ଟରୁ ରକ୍ଷା କରେ ।

୪। ଅନ୍ତତଃ ବର୍ଷରେ ଥରେ ପୋଥିକୁ କୋମଳ ବ୍ରସରେ ସଫା କରିବାକୁ ହେବ । ଫଳତଃ ପୋକ କାଟି ପକେଇଥିବା ଧୂଳିଗୁଣ୍ଡି ବାହାରିଯିବ ଓ ପୋଥି ମୁଣ୍ଡା ବାନ୍ଧି ନଷ୍ଟ ହେବ ନାହିଁ ।

୫। ପୋଥିଗୁଡ଼ିକ ସମାନ ଉତ୍ତାପ ବିଶିଷ୍ଟ ସ୍ଥାନରେ ସଂରକ୍ଷିତ ହେବା ବିଧେୟ । ଏହାକୁ ବେତରେ ନିର୍ମିତ ପେଡ଼ି କିମ୍ବା ଆଲମାରୀରେ ରଖାଯିବା ଉଚିତ୍ ।

୬। ତାଳପତ୍ର ପୋଥିକୁ ଗୋଟିଏ ମୋଟା ସୂତା କପଡ଼ା ଘୋଡାଇ ରଖିବା ଉଚିତ୍ ।

୭। ବ୍ୟବହାର କଲାବେଳେ ଅତି ଧୀର ଭାବରେ ପତ୍ରଗୁଡ଼ିକୁ ଓଲଟାଇବା ଉଚିତ୍ ।

୮। ଅସଲ ପତ୍ର ଉପରେ କୌଣସି ଚିହ୍ନ ବା ଅକ୍ଷର ତଳେ ଗାର ଦିଆ ନଯିବା ଉଚିତ୍ ।

୯। ତାଳପତ୍ର ପୋଥିକୁ କାଠପଟା ମଝିରେ ସମ ଚାପ ରଖି ଏକ ସୂତାରେ ଦୃଢ଼ ଭାବରେ ବନ୍ଧା ହେବା ନିହାତି ଜରୁରୀ ।

୧୦। ଯୋଉ ଗୃହରେ ପୋଥି ରଖାଯାଇଛି, ସେହି ଗୃହଟି ସନ୍ତସନିଆ ହୋଇ ନଥିବ । ଏଭଳି ଓଦା ଘରେ ପୋଥି ରହିଲେ, ଆର୍ଦ୍ରତା ଦୃଷ୍ଟିରୁ ପୋଥିଟି ନଷ୍ଟ ହୋଇଯିବାର ଯଥେଷ୍ଟ ସମ୍ଭାବନା ରହିଛି ।

ପୋଥିର ମୂଳ ଶତ୍ରୁ ହେଉଛି ପୋକ । ତେଣୁ ପୋକମାନଙ୍କ ଠାରୁ କିପରି ପୋଥିକୁ ରକ୍ଷା କରାଯାଇପାରିବ ତାହା ପ୍ରଣିଧାନର ବିଷୟ ।

୧। ଭଲ ତାଳପତ୍ର ପୋଥିକୁ ବନ୍ଦ ବାକ୍ସ ବା ଆଲମାରୀରେ ରଖିବା ଉଚିତ୍ ।

୨। ନିମ୍ବପତ୍ର ଭଳି ପ୍ରାକୃତିକ କୀଟବିକର୍ଷକ ପତ୍ରମାନ ପୋଥିଗୁଡ଼ିକ ସହ ରଖାଯିବା ଆବଶ୍ୟକ ।

୩। ଲାର୍ଭା ଅବସ୍ଥାରେ ଥିବାବେଳେ ପୋକ ପାଣ୍ଡୁଲିପି ଗୁଡ଼ିକୁ ଖାଇଯାଏ । ନୂଆ କରିସଂଗୃହୀତ ହୋଇଥିବା







ପୋଥିରେ ପୋକ ଅଣ୍ଡା କିମ୍ବା ଲାର୍ଭା ଥାଇପାରେ ଯାହାକି ଭଲ ପୋଥିକୁ ସଂକ୍ରମିତ କରିପାରେ । ଏଣୁ ସଂକ୍ରମିତ ପାଣ୍ଡୁଲିପିଗୁଡ଼ିକୁ ଭଲ ପାଣ୍ଡୁଲିପି ସହ ରଖିବ ନାହିଁ ।

୪। ତାଳପତ୍ର ପୋଥିର କାଠପଟା ଘୋଡ଼ଣି ସବୁ ପୋକଖିଆ ନୁହେଁ ବୋଲି ବାରମ୍ବାର ଯାଞ୍ଚ ହେବା ଆବଶ୍ୟକ ।

୫। ଖାଦ୍ୟ କୀଟ ଆକର୍ଷଣ କରେ । ତେଣୁ ପୋଥି ଭଣ୍ଡାର ଓ ପ୍ରଦର୍ଶନ ପ୍ରକୋଷ୍ଠକୁ ଖାଦ୍ୟ ନ ନେବା ଉଚିତ୍ ।

୬। ପୋଥି ଭଣ୍ଡାର ପରିସରକୁ ପରିଷ୍କାର ପରିଚ୍ଛନ୍ନ ରଖିବା ବିଧେୟ ।

୭। ଭଣ୍ଡାର ଘରକୁ ତିଆରି ବେଳେ ଉଇ ପ୍ରତିରୋଧକ୍ଷମ କରାଯାଇଥିଲେ ଭବିଷ୍ୟତରେ ଉଇ ଆକ୍ରମଣରୁ ରକ୍ଷା ମିଳିଥାଏ ।

୮। ତାଳପତ୍ର ପୋଥିକୁ କାନ୍ଥ ପାଖରୁ ଦୂରରେ ରଖିବା ଉଚିତ୍ । ଆଲମାରୀ ପ୍ରଭୃତିର ପାଦ ଦେଶ, ଉଇ ଆରୋହଣ ସ୍ଥାନରେ କୀଟନାଶକ ଔଷଧ ରଖାଯିବା ଜରୁରୀ ।

୯। କୀଟ ସଂକ୍ରମିତ ପାଣ୍ଡୁଲିପିକୁ ଅଲଗା କରିଦେଇ ଅଭିଶୋଧନ କରାଯିବା ଉଚିତ୍ ।

ବିଜ୍ଞାନର ଦ୍ରୁତ ଅଗ୍ରଗତି ଓ ଐତିହ୍ୟ, ପରମ୍ପରାକୁ ବଂଚେଇ ରଖିବାର ନିଷ୍ଠା ଯୋଗୁଁ ସଂରକ୍ଷଣର ପରିସର ଆଜି ବ୍ୟାପକ ହୋଇଛି । ଏ ଦିଗରେ ଇନ୍‌ଟାକ୍-ଇଣ୍ଡିଆନ କାଉନସିଲ୍ ଅଫ କଞ୍ଜରଭେସନ୍ ଇନଷ୍ଟିଚ୍ୟୁଟସ୍, ଲକ୍ଷ୍ନୌର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ପ୍ରାକୃତିକ ଏବଂ ସାଂସ୍କୃତିକ ପରମ୍ପରାର ସଂରକ୍ଷଣ ପାଇଁ ଏହା କାର୍ଯ୍ୟରତ ।

ତାଳପତ୍ର ପୋଥି ସଂରକ୍ଷଣ ଏବେ ନୂତନ ମୋଡ଼ ନେଇଛି । ବିଜ୍ଞାନଭିତ୍ତିକ ପ୍ରଣାଳୀରେ ଏବେ ସଂରକ୍ଷଣ କରାଯାଉଛି ।

୧। ତାଳପତ୍ର ପାଣ୍ଡୁଲିପିକୁ ସଂଗ୍ରହ କଲାପରେ, ପୋଥିର ଚତୁଃପାର୍ଶ୍ୱକୁ ଶୁଷ୍କ ସଫେଇ କରିବା ଆବଶ୍ୟକ ଯାହା ଫଳରେ ପୋଥିରେ ଲାଗିଥିବା ଶୁଖିଲା ଧୂଳିଗୁଣ୍ଡିର ଆବରଣକୁ ଛଡ଼ାଯାଇପାରିବ ।

୨। ତାଳପତ୍ର ପୋଥି ଉପରେ ଜମିଥିବା ଧୂଳି ଓ ଆବର୍ଜନାଗୁଡ଼ିକୁ ଶୁଷ୍କ ସଫେଇ କରିବା ପରେ ପତ୍ରରେ ଥିବା ବଳକା ଆବର୍ଜନାକୁ ଓଦା ଉପଚାର କରିବା ଆବଶ୍ୟକ ଥିବାରୁ ଦ୍ରବକ ସଫେଇ କରିବାକୁ ପଡ଼ିବ ।

୩। ଭଙ୍ଗା ତାଳପତ୍ରର ଯୋଡ଼େଇ ଏବେ ସମ୍ଭବ ହୋଇପାରୁଛି ଯାହା ପ୍ରାଚୀନ କାଳରେ ହେଉ ନଥିଲା । ପୋଥିଟିର ଗୋଟିଏ ପାର୍ଶ୍ୱ ନଷ୍ଟ ହୋଇଥିବା କିମ୍ବା କେତେକ ଅଂଶ ନଷ୍ଟ ହୋଇଥିବା ତାଳପତ୍ରକୁ ମରାମତି କରାଯାଇ, ନଷ୍ଟ ହୋଇଥିବା ଅଂଶରେ ସମାନ ମୋଟେଇ ଯୁକ୍ତ ତାଳପତ୍ର ସଂଯୁକ୍ତ କରାଯାଉଛି ।

୪। ତାଳପତ୍ରରେ ଧାରର ସମାନ୍ତରାଳରେ ସର୍ବଦା ଫାଟ ସୃଷ୍ଟି ହେବାର ଦେଖାଯାଏ । ତାଳପତ୍ର ମଧ୍ୟରେ ଥିବା ତନ୍ତୁର ସମାନ୍ତରାଳରେ ହିଁ ଏହି ଫାଟ ସୃଷ୍ଟି ହୋଇଥାଏ । ଫାଟକୁ ଆଉ ବେଶୀ ଫାଟିବାକୁ ନଦେଇ, ଫାଟ ହୋଇଥିବା ସ୍ଥାନରେ ହିଁ ମରାମତି କରାଯାଉଛି ।

୫। ତାଳପତ୍ର ତନ୍ତୁଯୁକ୍ତ ଯାହାକୁ କୀଟ ଓ ଅନିଷ୍ଟକାରୀ ପ୍ରାଣୀମାନେ ସହଜରେ ଆକ୍ରମଣ କରନ୍ତି । ସିଲଭର ଫିସ୍ ବା ଉଇଦ୍ୱାରା ନିର୍ମିତ ଗର୍ତ୍ତ ତାଳପତ୍ରରେ ବେଳେ ବେଳେ ଦେଖିବାକୁ ମିଳେ । ଏହି କଣାଗୁଡ଼ିକ ଏକାଠି ଲାଗିଯାଇ କ୍ରମଶଃ ଏକ ବଡ଼ ଛିଦ୍ରରେ ପରିଣତ ହୋଇଥାଏ । ଆଜିକାଲି ତନ୍ତୁଯୁକ୍ତ ଜିନିଷ ସାହାଯ୍ୟରେ ହିଁ ଏହି ଗର୍ତ୍ତ ପୂରଣ କରାଯାଇପାରୁଛି ।

୬। ତାଳପତ୍ର ସବୁ ପୁରୁଣା ହୋଇଗଲେ ଭାଙ୍ଗିଯିବାର







ଲକ୍ଷ୍ୟ କରାଯାଏ । ପତ୍ରର ଉପର ଅଂଶରେ ଥିବା ଆବଶ୍ୟକ ତେଲିଆ ଅଂଶ ଶୁଖିଯିବା ହିଁ ଏହାର ମୁଖ୍ୟ କାରଣ । ତାଳପତ୍ରର ଉପରିଭାଗରେ କିଛି ତୈଳ ଲେପନ କରି ନରମତାକୁ ପୁନଃପ୍ରବର୍ତ୍ତନ କରାଯାଇ ସଂରକ୍ଷଣ କରାଯାଇପାରୁଛି ।

ଏତଦ୍‌ବ୍ୟତୀତ ଗ୍ରନ୍ଥ ସମ୍ପାଦନା ଦ୍ୱାରା ମଧ୍ୟ ପୋଥିଗୁଡ଼ିକର ସଂରକ୍ଷଣ କାଯାଇପାରିବ । ଧୂଳି ଓ ବାୟୁମଣ୍ଡଳୀୟ ପ୍ରଦୂଷଣରୁ ପାଣ୍ଡୁଲିପିଗୁଡ଼ିକୁ ରୋକିବା ପାଇଁ, ପୋଥିଗୁଡ଼ିକୁ କିପରି ଆଲୋକରୁ ସୁରକ୍ଷା ଯୋଗାଇ ଦେଇହେବ, ଆପେକ୍ଷିକ ଆର୍ଦ୍ରତା ଓ ଉତ୍ତାପ ଜନିତ କ୍ଷତିରୁ ତାଳପତ୍ର ପୋଥିକୁ ରକ୍ଷା କରିବା ପାଇଁ ବିଜ୍ଞାନ-ଭିତ୍ତିକ କେତେକ ପଦ୍ଧତି ବାହାରିଲାଣି । ପୋଥିର ସଂରକ୍ଷଣ ପାଇଁ ତାହା ପାଳନ କରିବା ଉଚିତ୍ ।

ଓଡ଼ିଶାର ଘରେ ଘରେ ତାଳପତ୍ର ପୋଥି ପୂଜା ପାଏ । ଏହି ପୋଥ-ପୂଜାର ପରମ୍ପରା ପ୍ରାଚୀନ କାଳରୁ ରହିଆସିଛି । ଆଜି ମଧ୍ୟ ମନ୍ଦିରରେ, ମଠରେ, ଗାଦିରେ, ଭାଗବତ ଟୁଙ୍ଗୀରେ ପୋଥି ପୂଜା ଚାଲିଛି । ଓଡ଼ିଆ ଜାତିର ଐତିହ୍ୟରେ ଖାଲି ନୁହେଁ, ଦୈନନ୍ଦିନ ଚଳଣିରେ ମଧ୍ୟ ପୋଥି ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରିଛି । ଆମ ସଂସ୍କୃତିର ନିଦର୍ଶନ, ଓଡ଼ିଆ ଜାତିର ପ୍ରାଣ ଏହି ତାଳପତ୍ର ପୋଥିର ସଂରକ୍ଷଣରେ ଆମେ ସମସ୍ତେ ବ୍ରତୀ ହେବା ତାଳପତ୍ର ପୋଥିକୁ ବଞ୍ଚେଇ ରଖିବା- ଆମର ଭବିଷ୍ୟତ ବଂଶଧରମାନଙ୍କ ପାଇଁ ।



**କ୍ୟୁରେଟର, ପୋଥି ବିଭାଗ**
**ଓଡ଼ିଶା ରାଜ୍ୟ ସଂଗ୍ରହାଳୟ**









# ଓଡ଼ିଶାର ପୋଥିବିଭବ

**ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର**

ତାଳପତ୍ର ପୋଥି ହେଉଛି ଓଡ଼ିଶାର ଅମୂଲ୍ୟ ସାରସ୍ୱତ ବିଭବ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ପ୍ରାପ୍ତ ତାଳପତ୍ର ପୋଥି ଓ ତହିଁରେ ଉଲ୍ଲେଖିତ ଅକ୍ଷର ପଂକ୍ତି, ଚିତ୍ରାବଳୀ, ମଣ୍ଡଳ ଓ ଯନ୍ତ ପ୍ରଭୃତି ଦେଖିଲେ ହୃଦ୍‌ବୋଧ ହୁଏ, ଓଡ଼ିଆ ଜାତି ତାଳପତ୍ର ପୋଥିରେ ଅକ୍ଷର ଲେଖିବା, ଚିତ୍ର ଆଙ୍କିବା, ତଥା ମଣ୍ଡଳ ଓ ରେଖା ଅଙ୍କନ କରିବାରେ ଅନେକ ଅଜ୍ଞାତ ତଥ୍ୟ ଉପଲବ୍ଧ ହୋଇଥାଏ । ଦୁଃଖର ବିଷୟ ଓଡ଼ିଶାର ଏହି ପ୍ରାଚୀନ ସାରସ୍ୱତ ବିଭବ ସଂପର୍କରେ ଅଦ୍ୟାବଧି ପୂର୍ଣ୍ଣାଙ୍ଗ ବିବରଣୀ ଅଥବା ଗବେଷଣାସନ୍ଦର୍ଭ ପ୍ରକାଶ ପାଇନାହିଁ । ଏପରିକି ପୋଥି ବିଭବଙ୍କ ସଂରକ୍ଷଣ ବିଧିବ୍ୟବସ୍ଥା ମଧ ସନ୍ତୋଷ ଜନକ ନୁହେଁ ।

ଓଡ଼ିଶା ଗୋଟିଏ ପ୍ରାଚୀନ ସାରସ୍ୱତ ପୀଠ । ଓଡ଼ିଆ ଭାଷାର ପ୍ରାଚୀନତାର ପ୍ରମାଣ ଭରତଙ୍କ ରଚିତ ନାଟ୍ୟଶାସ୍ତ୍ରରେ ଉଲ୍ଲେଖ ଥିଲେ ହେଁ କେତେକ ଏହାକୁ ବିଭାଷା ବୋଲି କହି ବିଭ୍ରାନ୍ତି ସୃଷ୍ଟି କରିଥାନ୍ତି । ଭରତମୁନି ଖ୍ରୀଷ୍ଟପୂର୍ବ କାଳରେ ରଚିତ ନାଟ୍ୟଶାସ୍ତ୍ରରେ ଓଡ୍ରମାଗଧୀ ଅର୍ଦ୍ଧମାଗଧୀ ବା ଓଡ଼ିଆ ଭାଷାକୁ ସପ୍ତ ଭାଷା ମଧରେ ଅନ୍ତର୍ଭୁକ୍ତ କରିଛନ୍ତି ତଥା ଏହା ଶ୍ରେଷ୍ଠୀ ବା ସାଧବମାନଙ୍କର ଭାଷା ବୋଲି ବ୍ୟକ୍ତ କରିଛନ୍ତି । ପରବର୍ତ୍ତୀ ଶିଳାଲେଖ ଓ ତାମ୍ରଲେଖ ମାନଙ୍କରେ ଅନେକ ଓଡ଼ିଆ ଅକ୍ଷର ପରିଦୃଷ୍ଟ ହୋଇଥାଏ । ପ୍ରାଚୀନ ଓଡ଼ିଶାର ଶାସକ ବୃନ୍ଦ ଓଡ଼ିଆ ଲିପିରେ ଅଭିଲେଖ ଉତ୍କୀର୍ଣ୍ଣ କରିନଥିଲେ ହେଁ ବ୍ୟବହୃତ ବ୍ରାହ୍ମୀ ଓ ଅନ୍ୟାନ୍ୟ ଲିପିରେ ବହୁ ଓଡ଼ିଆ ଅକ୍ଷର ଖୋଦିତ ହୋଇଛି । ପଦ୍ମଶ୍ରୀ ଡ଼କ୍ଟର ସତ୍ୟ ନାରାୟଣ ରାଜଗୁରୁ ଅଭିଲେଖ ସମୂହରୁ ସେହି ସବୁ ଓଡ଼ିଆ ଅକ୍ଷର ଚିହ୍ନଟ କରି "ଓଡ଼ିଆ ଲିପିର କ୍ରମ ବିକାଶ" ପୁସ୍ତକ ରଚନା କରିଛନ୍ତି । ସେହି ପୁସ୍ତକ ଅଧୟନ କଲେ ହୃଦ୍‌ବୋଧ ହୁଏ ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଆ ଭାଷା ଓ ଲିପିର ଉନ୍ମେଷ ଘଟିଥିଲା । ଯେଉଁ ଓଡ଼ିଆ ଜାତି ଖ୍ରୀଷ୍ଟପୂର୍ବ କାଳରୁ ବିଶ୍ୱଦରବାରରେ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ଜାତି ଭାବରେ ପରିଚିତ ଥିଲା ସେହି ଜାତିର ନିଶ୍ଚୟ ଭାଷା ରହିଥିଲା । କିନ୍ତୁ ସେହି ସାହିତ୍ୟର ପରିଚୟ ଅଦ୍ୟାବଧି ମିଳିନାହିଁ । ଗବେଷକ ମାନେ ଷଷ୍ଠ ସପ୍ତମ ଶତାବ୍ଦୀରୁ ରଚିତ ଚର୍ଯ୍ୟାଗୀତିକୁ ଓଡ଼ିଶାର ପ୍ରଥମ ସାହିତ୍ୟ ରୂପେ ବିବେଚନା କରିଥାନ୍ତି । ଏହି ଚର୍ଯ୍ୟାଗୀତିର ରଚୟିତାମାନେ ଅଜ୍ଞାତ କାରଣ ବଶତଃ ଓଡ଼ିଶାରୁ ନେପାଳ ଚାଲିଯାଇଥିଲେ । ପରବର୍ତ୍ତୀକାଳରେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ନେପାଳ ରାଜଦରବାରରେ ପୁସ୍ତକାଳୟରୁ ଚର୍ଯ୍ୟାଗୀତର ପୋଥିଗୁଡ଼ିକୁ ଉଦ୍ଧାର କରି ସେଗୁଡ଼ିକ ପ୍ରାଚୀନ ବଙ୍ଗଳା ଭାଷା ବୋଲି ବ୍ୟକ୍ତ କରିଥିଲେ । କିନ୍ତୁ ଡ଼କ୍ଟର କରୁଣାକର ଏହି ଚର୍ଯ୍ୟାଗୀତ ଉପରେ ଗବେଷଣା କରି "ଆଶ୍ଚର୍ଯ୍ୟଚର୍ଯ୍ୟାଚୟ" ସନ୍ଦର୍ଭ ରଚନା କରିଥିଲେ ଏବଂ ପ୍ରମାଣ କରିଥିଲେ ଯେ ଏହି ଗୀତଗୁଡ଼ିକ ହେଉଛି ପ୍ରାଚୀନ ଓଡ଼ିଆ ସାହିତ୍ୟ । ପରବର୍ତ୍ତୀ କାଳରେ ପ୍ରଫେସର ଡଃ ବଂଶୀଧର ମହାନ୍ତି ସ୍ୱରଚିତ ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥରେ ନେପାଳରୁ ପ୍ରାପ୍ତ ଚର୍ଯ୍ୟାଗୀତିର ଚିତ୍ର ପ୍ରକାଶ କରିଛନ୍ତି । ଏହି ଚିତ୍ରରୁ ପ୍ରାଚୀନ ଓଡ଼ିଆ ଲିପିର ସ୍ୱରୂପ ଉପଲବ୍ଧ ହୋଇଥାଏ । ଅଧିକନ୍ତୁ ପ୍ରମାଣିତ ହୋଇଥାଏ ଯେ ଷଷ୍ଠ, ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ପୋଥି ଲିଖନ ପରମ୍ପରା ରହିଥିଲା । କାଗଜର ଆବିଷ୍କାର ବହୁକାଳରୁ ହୋଇଥିଲେ ହେଁ ଓଡ଼ିଆ ଜାତି ବାଉଁଶ ଓ ଘାସ ମଣ୍ଡରୁ କାଗଜ ତିଆରି କରିବା ସମୟସାପେକ୍ଷ ଓ ବ୍ୟୟବହୁଳ ବିଚାର କରି କାଗଜ ତିଆରିରେ ମନୋନିବେଶ କରିନଥିଲେ । କାଗଜ ଠାରୁ ଶକ୍ତ ତାଳପତ୍ରରେ ଓଡ଼ିଆମାନେ ବହୁ ପ୍ରାଚୀନ କାଳରୁ ଲେଖିବା ପରଂପରା ଆରମ୍ଭ କରିଥିଲେ । ଓଡ଼ିଶାର ପୁରପଲ୍ଲୀ ସର୍ବତ୍ର ବହୁ ସଂଖ୍ୟାରେ ତାଳପତ୍ର ଥିବାରୁ ତାଳପତ୍ର ସଂଗ୍ରହ ଅସୁବିଧା ଜନକ ନଥିଲା । ସେହି ତାଳପତ୍ରକୁ ସଂଗ୍ରହ ପୂର୍ବକ ନିର୍ଦ୍ଦିଷ୍ଟ ପରିମାଣର ପତ୍ର କାଟି ଖରାରେ ଶୁଖାଇଲା ପରେ ତାହା ଅକ୍ଷର ଲିଖନ ନିମିତ୍ତ ଉପଯୁକ୍ତ ହେଉଥିଲା ।







ସେହି ଶୁଖିଥିବା ତାଳପତ୍ରରେ ଲୌହ ଲେଖନୀ ସାହାଯ୍ୟରେ ଓଡ଼ିଆ ଲେଖକମାନେ ଲେଖୁଥିଲେ । ବ୍ରାହ୍ମୀ ଲିପିରୁ ଓଡ଼ିଆ ଲିପିର ଜନ୍ମ କୁହାଯାଉଥିଲେ ହେଁ ଓଡ଼ିଆ ଲେଖନକାର ବ୍ରାହ୍ମୀ ଲିପି ସଦୃଶ ଲେଖିଲେ ତାଳପତ୍ର ଚିରି ଯିବାର ଭୟ ରହୁଥିଲା । ତେଣୁ ସେମାନେ ତାଳପତ୍ରରେ ଲୌହଲେଖନୀ ଦ୍ୱାରା ବର୍ତ୍ତୁଳାକାର ଅକ୍ଷର ଲେଖୁଥିଲେ । ଏହି କାରଣରୁ ଓଡ଼ିଆ ଅକ୍ଷର ବର୍ତ୍ତୁଳାକାର ହୋଇଛି ବୋଲି କୁହାଯାଏ । ଗବେଷକମାନଙ୍କ ମଧ୍ୟରେ ତାଳପତ୍ରର ଜୀବନକାଳ ତିନିଶହ ବର୍ଷ । ତେଣୁ ଓଡ଼ିଶାରେ ଅକ୍ଷର ଉନ୍ମେଷ କାଳୀନ ତାଳପତ୍ର ପୋଥି ମିଳୁନାହିଁ । ତାଳପତ୍ର ପୋଥିକୁ ଦୀର୍ଘକାଳ ରାସାୟନିକ ପ୍ରଲେପ ଦେଇ ସଂରକ୍ଷଣ କରିବାର ବିଧି ଓଡ଼ିଆଙ୍କୁ ଜଣାନଥିଲା, ଯେଉଁଥିପାଇଁ ଓଡ଼ିଶାରେ ପ୍ରାଚୀନ ପୋଥି ଅନୁପଲବ୍ଧ । ନେପାଳ ରାଜାଙ୍କ ଦ୍ୱାରା ଓଡ଼ିଶାର ଚର୍ଯ୍ୟାଗୀତ ପୋଥି ରାସାୟନିକ ପ୍ରଲେପ ଓ ନିମତେଲଘଷି ସଂରକ୍ଷଣ କରାଯାଇଥିବାରୁ ନେପାଳ ରାଜଦରବାରରୁ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଷଷ୍ଠ- ସପ୍ତମ ଶତାବ୍ଦୀର ପୋଥି ପ୍ରାପ୍ତ ହୋଇଥିଲା ।

ଚର୍ଯ୍ୟାଯୁଗ ପରେ ଲୋକସାହିତ୍ୟ ଓ ନାଥ ସାହିତ୍ୟର ଯୁଗ । ଲୋକସାହିତ୍ୟ ଲୋକମାନେ ଶୁଣି ଶୁଣି ମନେ ରଖୁଥିବାରୁ ଲିପିବଦ୍ଧ କରିବାର ଆବଶ୍ୟକତା ଅନୁଭୂତ ହୋଇନଥିଲା । ତତ୍ତ୍ୱପୂର୍ଣ୍ଣ ନାଥ ସାହିତ୍ୟ ବିଜ୍ଞ ପ୍ରାଜ୍ଞଙ୍କ ଦ୍ୱାରା ତାଳପତ୍ର ପୋଥିରେ ଲେଖାଯାଉଥିଲା । ତଦନୁରୂପ ସେହି ସମୟରେ ତନ୍ତ୍ର ସାହିତ୍ୟ ତନ୍ତ୍ରାଚାର୍ଯ୍ୟବୃନ୍ଦ ପୋଥିରେ ଲେଖି ରଖୁଥିଲେ ତଥା ଶିଷ୍ୟ ଗଣ ସେହି ସାହିତ୍ୟର ଉତ୍ତରାଧିକାରୀ ବୋଲାଇ ତନ୍ତ୍ରଗୁରୁଙ୍କ ସ୍ୱହସ୍ତ ଲିଖିତ ପୋଥିକୁ ପୂଜା କରୁଥିଲେ । ଏହି ସବୁ ସାହିତ୍ୟ ଗୁରୁଶିଷ୍ୟ ପରଂପରାକ୍ରମେ ପ୍ରଚଳିତ ଥିବାରୁ ତାହା ସୀମିତ ଥିଲା । ମାଟିର ମହାକବି ଶାରଳା ଦାସ ତାଳପତ୍ର ପୋଥିରେ ଓଡ଼ିଆ ମହାଭାରତ ରଚନା କରିଥିଲେ । ଏଥିରୁ ପ୍ରମାଣିତ ହୁଏ ଶାରଳାଙ୍କ ବହୁ ପୂର୍ବରୁ ଓଡ଼ିଶାରେ ପୋଥି ଲିଖିନ ପରଂପରା ଅବ୍ୟାହତ ଥିଲା । ଅତିବଡ଼ୀ ଜଗନ୍ନାଥ ଦାସ ତାଳପତ୍ର ପୋଥିରେ ମାନକ ଓଡ଼ିଆ ଭାଷାରେ ଭାଗବତ ରଚନା କରିବା ପରେ ବିନା ବିଦ୍ୟାଳୟରେ ଲକ୍ଷ ଲକ୍ଷ ଓଡ଼ିଆ ସାକ୍ଷର ହୋଇଗଲେ । ଭାଗବତ ପାଠ କରିବା ନିମିତ୍ତ ତଥା ଗୋଟିଏ ପୋଥିରୁ ଆଉ ଗୋଟିଏ ପୋଥିକୁ ଭାଗବତ ଉତାରିବା ନିମିତ୍ତ ବର୍ଣ୍ଣ ଶିକ୍ଷାର ଆବଶ୍ୟକତା ପଡ଼ିଲା । ଏହି ଦୃଷ୍ଟିକୋଣରୁ ଓଡ଼ିଶାର କୋଣ ଅନୁକୋଣରେ ଭାଷାଶିକ୍ଷା ନିମିତ୍ତ ଚାଟଶାଳୀ ମାନ ପ୍ରତିଷ୍ଠିତ ହୋଇଥିଲା । ଭାଷାଶିକ୍ଷା ପ୍ରଦାନ ନିମିତ୍ତ ଓଡ଼ିଶାରେ 'ମାଟିବଂଶ' ନାମରେ ଏକ ସ୍ୱତନ୍ତ୍ର ସଂପ୍ରଦାୟ ସୃଷ୍ଟି ହୋଇଥିଲେ, ଯାହା ଅନ୍ୟତ୍ର ବିରଳ । ଏହି ମାଟିବଂଶ ଅବଧାନମାନେ ଗ୍ରାମେ ଗ୍ରାମେ ଚାଟଶାଳୀ ସ୍ଥାପନ ପୂର୍ବକ ଚାଟ ବା ଛାତ୍ରମାନଙ୍କ ଓଡ଼ିଆ ଅକ୍ଷର, ଶବ୍ଦ, ବାକ୍ୟ, ପ୍ରାର୍ଥନା, ଭାଗବତ ପାଠ, ରାସପଂଧାୟୀ, ସଂଖ୍ୟା, ମିଶାଣ, ଫେଡ଼ାଣ, ଗୁଣନ ଓ ପଣକିଆ ପ୍ରଭୃତି ଶିକ୍ଷା ଦେଉଥିଲେ । ଉନ୍ନତ ଛାତ୍ରମାନଙ୍କୁ ତାଳପତ୍ରରେ ଲୌହ ଲେଖନୀ ଦ୍ୱାରା ଲେଖିବାକୁ ଶିକ୍ଷା ଦିଆଯାଉଥିଲା । ସାଲେପୁର ସନ୍ନିକଟ କିସାନ୍ପୁରରେ ନିର୍ମିତ ଚାଟେଶ୍ୱର ମନ୍ଦିର ପ୍ରସଙ୍ଗରୁ ଅନୁଭୂତ ହୁଏ, ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଚାଟଶାଳୀ ଶିକ୍ଷା ପାରଂପରିକ ସ୍ୱରୂପ ଧାରଣ କରିଥିଲା । ନଚେତ୍ ଶିବ ଚାଟ ହୋଇ ଚାଟଶାଳୀରେ ଅଧ୍ୟୟନ କରୁଥିଲେ ବୋଲି କିମ୍ବଦନ୍ତୀ ସୃଷ୍ଟି ହୋଇନଥାନ୍ତା । ଚାଟଶାଳୀ ବ୍ୟତୀତ ଅନେକ ଛାତ୍ର ଗୃହରେ ପୋଥି ଲିଖନ ଶିକ୍ଷା କରୁଥିଲେ । ବ୍ରାହ୍ମଣ, କରଣ ଓ ଜ୍ୟୋତିଷ ପ୍ରଭୃତି ସମ୍ପ୍ରଦାୟର ପୋଥିଲିଖନ ଏକ ବଂଶଗତ ପରଂପରା ଥିଲା । ସାରଳା ଯୁଗ ପରେ ଓଡ଼ିଶାର କବିକୋବିଦ ବୃନ୍ଦ ଅଗଣିତ ପୁରାଣ, ଶାସ୍ତ୍ର, ଚଉତିଶା, ସ୍ତବ, ସ୍ତୁତି, ବୋଲି, ଚୂର୍ଣ୍ଣିକ, ଗୀତ, କାବ୍ୟ ଓ କବିତା ରଚନା କରିଥିଲେ । ପୋଥି ଲେଖନକାର ମାନେ ତାଳପତ୍ରରେ ଏହି ସବୁ ଗ୍ରନ୍ଥକୁ ନକଲ କରି ବିକ୍ରୟ କରୁଥିଲେ । ସୁନ୍ଦର ଗୋଲ ଗୋଲ ଅକ୍ଷରରେ ଲିଖିତ ପୋଥିର ଆଦୃତି ରହିଥିଲା । ତେଣୁ ପୋଥ ଲିଖନ ଏକ ଉନ୍ନତ ସାରସ୍ୱତ କଳାରେ ପରିଣତ ହୋଇଥିଲା । କେତେକ ପୋଥି ଲେଖନକାର ପୋଥି ଲିଖନ ସମୟରେ ପଂକ୍ତି ଲିଖନ ସହିତ ସୁନ୍ଦର ସୁନ୍ଦର ଚିତ୍ର ଅଙ୍କନ ପୂର୍ବକ ପାଠକଙ୍କୁ ଆକୃଷ୍ଟ କରୁଥିଲେ । କେବଳ ଚିତ୍ର ନୁହେଁ,







ପୋଥିରେ ବିଭିନ୍ନ ମଣ୍ଡଳ ଓ ଯନ୍ତ୍ର ପାଠକଙ୍କ ଅବଗତି ନିମିତ୍ତ ଅଙ୍କନ ହେଉଥିଲା । ସ୍ଥଳ ବିଶେଷରେ କାଇଁଚ, ବଉଳକୋଳି, କାଚଗୁଣ୍ଡ ଓ ବିଭିନ୍ନ ପ୍ରାକୃତିକ ରଙ୍ଗଦ୍ୱାରା ଚିତ୍ରିତ ଚିତ୍ର, ମଣ୍ଡଳ ଓ ଯନ୍ତ୍ରସମୂହକୁ ମଣ୍ଡନ କରାଯାଉଥିଲା ।

ଉନ୍ନତ ପ୍ରାକୃତିକ ରଙ୍ଗ ବ୍ୟବହାର ଯୋଗୁଁ ଏହି ଚିତ୍ର ସମୂହ ଦୀର୍ଘସ୍ଥାୟୀ ଥିଲା । କ୍ରମେ ଏହା ଉତ୍କୃଷ୍ଟ କଳାକୌଶଳ ରୂପେ ପାରଂପରିକ ସ୍ୱରୂପ ଗ୍ରହଣ କଲା ଏବଂ ଅନେକ ପୋଥି ଲେଖକ ଓ ଚିତ୍ରକର ଏହାକୁ ଜୀବିକାର୍ଜନର ମାଧ୍ୟମ ରୂପେ ବିବେଚନା କଲେ । ପରିଣାମ ସ୍ୱରୂପ ଚିତ୍ରକର ନାମରେ ଗୋଟିଏ ସମ୍ପ୍ରଦାୟ ଓଡ଼ିଶାରେ ସୃଷ୍ଟି ହେଲା । ସେମାନେ ପୋଥରେ ଚିତ୍ର ଆଙ୍କିବା ସହିତ, କାନ୍ଥ, ସ୍ତମ୍ଭ ଓ ମନ୍ଦିରରେ ଚିତ୍ର ଆଙ୍କିଲେ । ଏହି ପୋଥି ଚିତ୍ରରୁ ହିଁ ପଟ୍ଟଚିତ୍ର ଅଙ୍କନ ସୃଷ୍ଟି ହୋଇଥିଲା ।

ତାଳପତ୍ର ପୋଥିରେ କେବଳ ଯେ ସାହିତ୍ୟ ଲିଖନ ହେଉଥିଲା ତାହା ନୁହେଁ, ପତ୍ର, ଘୋଷଣା, ଚୁକ୍ତି, ଜାତକ, ମାନପତ୍ର, ବିବାହ ସ୍ୱୀକୃତି ବା ଲଗ୍ନପତ୍ର ପ୍ରଭୃତି ମଧ୍ୟ ତାଳପତ୍ରରେ ଲେଖା ହେଉଥିଲା । ପ୍ରାଚୀନ କାଳରେ ବାର୍ଷିକ ପାଞ୍ଜି ମଧ୍ୟ ତାଳପତ୍ରରେ ଲେଖା ଯାଉଥିଲା । ରାଜା ଓ ଜମିଦାରମାନେ ଭୂ-ଅଭିଲେଖ, ଆଦେଶ, ଆୟବ୍ୟୟ ବିବରଣୀ, ନାମ ତାଲିକା, ଗ୍ରାମ ତାଲିକା ପ୍ରଭୃତି ତାଳପତ୍ରରେ ଉଲ୍ଲେଖ କରାଉଥିଲେ । ସନନ୍ଦ ଓ ଘୋଷଣାନାମା ନିମିତ୍ତ ରାଜା ଓ ଜମିଦାରମାନେ ଶିଳାଲେଖ ଓ ତାମ୍ରଲେଖ ଉତ୍କୀର୍ଣ୍ଣ କରାଉଥିଲେ ହେଁ ଅନ୍ୟାନ୍ୟ କାର୍ଯ୍ୟ ନିମିତ୍ତ ତାଳପତ୍ରରେ ଲେଖାଉଥିଲେ । ମଠ, ମନ୍ଦିର, ଭାଗବତ ଗାଦି, ଚଉପାଢ଼ୀ ପ୍ରଭୃତିରେ ଭାଗବତ, ହରିବଂଶ ପ୍ରଭୃତି ପୁରାଣ ଶାସ୍ତ୍ର ତାଳପତ୍ର ପୋଥି ପ୍ରତ୍ୟହ ସନ୍ଧ୍ୟାରେ ବୋଲାଯାଉଥିଲା ଏବଂ ସଭିଏଁ ଶୁଣି କୃତ୍ୟକୃତ୍ୟ ହେଉଥିଲେ । ଓଡ଼ିଆ ପୁରାଣ ଶାସ୍ତ୍ର ବ୍ୟତୀତ ବେଦ ଓ ଅନ୍ୟାନ୍ୟ ସଂସ୍କୃତଶାସ୍ତ୍ର ମଧ୍ୟ ଓଡ଼ିଆ ଲିପିରେ ତାଳପତ୍ରରେ ଲେଖା ଯାଇ ମଠ, ମନ୍ଦିର ଓ ବ୍ରାହ୍ମଣ ଗୃହମାନଙ୍କରେ ରହୁଥିଲା । ଓଡ଼ିଆମାନେ ତାଳପତ୍ର ପୋଥିକୁ ବିଭୁ ଓ ବିଭବ ଉଭୟଜ୍ଞାନ କରୁଥିଲେ । ପୋଥି ପୂଜନ ଓଡ଼ିଆମାନଙ୍କର ଏକ ମହତୀ ପରଂପରା । ଅନେକ ଗୃହ, ମଠ ଓ ମନ୍ଦିରରେ ପ୍ରତ୍ୟହ ପୋଥିଗାଦିକୁ ପୂଜା କରାଯାଉଥିଲା । ଶାରଦୀୟ ଦୁର୍ଗାପୂଜାରେ ପୋଥି ଓ ଲେଖନୀ ମାଆଙ୍କର ଆସ୍ଥାନରେ ଥୁଆଯାଇ ପୂଜା କରାଯାଉଥିଲା । ଅନେକ ସାରସ୍ୱତ ପରିବାରରେ ପୋଥିପୂଜନ ଏକ ବାର୍ଷିକ ପରଂପରାରେ ପରିଣତ ହୋଇଥିଲା । କୌଣସି ନୂଆ ପୋଥି ଲେଖାହେଲେ ଅଥବା କୌଣସି ଲେଖନକାରଙ୍କ ଠାରୁକ୍ରୟ ହୋଇ ଆସିଲେ ପ୍ରଥମେ ପୂଜା ହେବାପରେ ପାଠ କରାଯାଉଥିଲା । ପୋଥିଗାଦିକୁ ଅଗାଧୁଆ ବା ଅପବିତ୍ର ଅବସ୍ଥାରେ କେହି ଛୁଉଁ ନଥିଲେ । ଓଡ଼ିଆମାନେ ପୋଥିକୁ ଅମୂଲ୍ୟ ସାରସ୍ୱତ ବିଭବ ଜ୍ଞାନ କରୁଥିଲେ । ଭାଇ ଭାଇ ମଧ୍ୟରେ ସମ୍ପତ୍ତି ବଣ୍ଟନ ହେଲେ ପ୍ରଥମେ ଠାକୁର, ଦ୍ୱିତୀୟରେ ପୋଥି ଓ ତୃତୀୟରେ ସ୍ଥାବରାସ୍ଥାବର ସମ୍ପତ୍ତି ବଣ୍ଟନ ହେଉଥିଲା । ତାଳପତ୍ର ପୋଥିରେ ମଧ୍ୟ ବଣ୍ଟନପତ୍ର ଉଲ୍ଲିଖିତ ହେଉଥିଲା । ନ୍ୟାୟ ନିଶାପ ବେଳେ ନିୟମ କରିବାକୁ ପଡ଼ିଲେ ଲୋକମାନେ ପୋଥି ଧରି ନିୟମ କରୁଥିଲେ । ସଂକ୍ଷେପରେ ଉଲ୍ଲେଖ କଲେ, ଓଡ଼ିଆଙ୍କ ବ୍ୟକ୍ତିଗତ, ପାରିବାରିକ, ସାମାଜିକ ଓ ଧାର୍ମିକ ଜୀବନ ପୋଥି ସହ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିଲା ।

ଓଡ଼ିଆମାନେ ପୋଥି ସାଇତି ରଖିବା ନିମିତ୍ତ ସିନ୍ଦୁକ ରଖୁଥିଲେ । ଠାକୁର ପୂଜା ଓ ଭାଗବତାଦି ଶାସ୍ତ୍ରର ପୋଥି ଠାକୁରଙ୍କ ସିଂହାସନ ନିକଟରେ ବିମାନରେ ରହୁଥିଲେ ହେଁ କାବ୍ୟ, କବିତା ଓ ପୁରାଣ ପୋଥି ପ୍ରଭୃତି ସିନ୍ଦୁକରେ ରଖାଯାଉଥିଲା ପୁରୁଣା ପୋଥି ପଢ଼ିନହେଲେ ଶିମ୍ବପତ୍ର ଘସାଯାଇ ପରିଷ୍କାର କରାଯାଉଥିଲା । କୀଟଦ୍ରଂଷ୍ଟ ନହେବା ନିମିତ୍ତ ପୋଥିରେ ନିୟମିତ ଭାବରେ ନିମ୍ବ ପତ୍ର ରସ ଘଷା ଯାଉଥିଲା । ସମୟେ ସମୟେ ସିନ୍ଦୁକରୁ ପୋଥି ବାହାର କରାଯାଇ ଖରାରେ ଶୁଖା ଯାଉଥିଲା । ପୋଥିର ଦୁଇପାର୍ଶ୍ୱରେ ଥିବା ପଟା ଓ ସରୁ ଦଉଡ଼ି ନଷ୍ଟ ହୋଇଗଲେ ନୂତନ ପଟା ଓ ଦଉଡ଼ି ପୁନର୍ବାର ବନ୍ଧା ଯାଉଥିଲା । ସଂରକ୍ଷଣର ଏତାଦୃଶ ପ୍ରତିକାର ସତ୍ତ୍ୱେ ଯଦି କୌଣସି ପୋଥି କୀଟଦ୍ରଂଷ୍ଟ ହେବାର







ଲକ୍ଷ୍ୟ କରାଯାଉଥିଲା । ସେହି ପୋଥିକୁ ନୂତନ ତାଳପତ୍ରରେ ଲେଖାଯାଉଥିଲା । ତଥା ନଷ୍ଟ ହୋଇଯାଇଥିବା ପୋଥିକୁ ଜଳସ୍ରୋତରେ ଭସାଇ ଦିଆଯାଉଥିଲା । ସ୍ଥଳବିଶେଷରେ ଠାକୁର ଗାଦିରେ ଥିବା ପୋଥି ଚନ୍ଦନ ଓ ପାଣି ପ୍ରଭୃତି ପଡ଼ି ନଷ୍ଟ ହୋଇଯାଉଥିଲା । ସେହି କ୍ଷେତ୍ରରେ ମଧ୍ୟ ନୂତନ ପୋଥି ଉତାରା ଯାଇ ପୁରୁଣା ନଷ୍ଟ ପୋଥିକୁ ଜଳରେ ବିସର୍ଜନ କରାଯାଉଥିଲା । ନଈବଢ଼ି ଓ ଘର ପୋଡ଼ି ପ୍ରଭୃତି ଆକସ୍ମିକ ବିପଦରେ ଅନେକ ପୋଥି ନଷ୍ଟ ହୋଇଯାଉଥିଲା । ଏହି ସବୁ କ୍ଷେତ୍ରରେ ଗୃହକର୍ତ୍ତା ପୋଥିଲେଖକକାରଙ୍କ ଠାରୁ ନୂତନ ପୋଥି କ୍ରୟ ପୂର୍ବକ ଗୃହକୁ ପୋଥି ମଣ୍ଡନ କରୁଥିଲେ । ପୋଥି ଅତିପୁରୁଣା ହୋଇଗଲେ ଖୋଲୁ ଖୋଲୁ ଚିରି ଯାଉଥିଲା ଏବଂ ସେହି ପୋଥିର ନୂତନ ନକଲ ପ୍ରସ୍ତୁତ କରାଯାଇ ପୁରୁଣା ପୋଥିକୁ ଜଳସମାଧି ଦିଆଯାଉଥିଲା ।

ପୋଥି ଲେଖିପାରୁଥିବା ଓ ପଢ଼ିପାରୁଥିବା ବ୍ୟକ୍ତିଙ୍କର ସମାଜରେ ଖାତିର ରହିଥିଲା । ସେମାନେ ସମାଜର ଶିକ୍ଷିତ ବ୍ୟକ୍ତି ଭାବରେ ପରିଗଣିତ ହେଉଥିଲେ । ବ୍ରାହ୍ମଣ, କରଣ ଓ ଜ୍ୟୋତିଷ ପ୍ରଭୃତି ପରିବାରରେ ପିଲାମାନଙ୍କୁ ପୋଥି ଲେଖିବାର କଳାକୌଶଳ ପାରଂପରିକ ରୀତିରେ ଶିକ୍ଷା ଦିଆଯାଉଥିଲା । ପୋଥି ଲିଖନ ପ୍ରଶିକ୍ଷଣ କାଳରେ ସୁନ୍ଦର ଅକ୍ଷରରେ ପୋଥିଲିଖନ ପ୍ରତିଯୋଗିତା ମଧ୍ୟ ହେଉଥିଲା ଏବଂ କୃତୀଙ୍କୁ ପୁରସ୍କୃତ କରାଯାଉଥିଲା । ପ୍ରଶିକ୍ଷଣ ପରେ ଅନେକ ପୋଥିଲିଖନକୁ ଜୀବିକା କରୁଥିଲେ । ବିଭିନ୍ନ ଶାସ୍ତ୍ର, ପୁରୁଣା ଓ କାବ୍ୟକବିତାକୁ ସୁନ୍ଦର ଅକ୍ଷରରେ ତାଳପତ୍ରରେ ଲେଖି ଓ ତହିଁରେ ବିଭିନ୍ନ ରଙ୍ଗୀନ୍ ଚିତ୍ରକଳା ଅଙ୍କନ କରି ଲେଖନକାରମାନେ ପୋଥି ବିକ୍ରୟ କରୁଥିଲେ । ଯାହାର ଲେଖନ କଳା ଓ ଚିତ୍ର ଆକର୍ଷଣୀୟ ହେଉଥିଲା ସେମାନେ ବହୁ ପୋଥି ବିକ୍ରୟ କରୁଥିଲେ । ଅନେକ ବଦାନ୍ୟବ୍ୟକ୍ତି ଲେଖନକାରମାନଙ୍କଠାରୁ ପୋଥି କ୍ରୟ କରି ବ୍ରାହ୍ମଣ, ସନ୍ନ୍ୟାସୀ ଓ ବିଦ୍ୱାନମାନଙ୍କୁ ଦାନ କରୁଥିଲେ । ପୋଥିଦାନ ଏକ ମହତ ଦାନ ରୂପେ ବିବେଚିତ ହେଉଥିଲା । ରାଜା ଓ ଜମିଦାରମାନେ ବ୍ରାହ୍ମଣ ଓ ପଣ୍ଡିତମାନଙ୍କୁ ପାଟ କୁଣ୍ଡଳ ସହିତ ପୋଥିପ୍ରଦାନ କରି ସମ୍ମାନିତ କରୁଥିଲେ । କୌଣସି ବିଦ୍ୱାନଙ୍କୁ ସାରସ୍ୱତସଭାରେ ସମ୍ବର୍ଦ୍ଧନା କରାଯାଉଥିଲେ ପୋଥି ପ୍ରଦାନ ପୂର୍ବକ ସମ୍ମାନିତ କରାଯାଉଥିଲା ।

ମଠ ଓ ମନ୍ଦିରମାନଙ୍କରେ ନିତ୍ୟନୈମିତ୍ତିକ ଘଟଣା ଓ ଆୟବ୍ୟୟ ପୋଥିରେ ଲିପିବଦ୍ଧ ହୋଇ ରହୁଥିଲା । ଦୈନିକ ଏହା ଲେଖିବାକୁ ଲେଖକକାରମାନେ ଜାଗିରି ପାଇ ନିଯୁକ୍ତ ହେଉଥିଲେ । ପୁରୀ ଶ୍ରୀମନ୍ଦିରର ମାଦଳାପାଞ୍ଜି ଏହାର ଉତ୍କୃଷ୍ଟ ଉଦାହରଣ । ଶ୍ରୀ ମନ୍ଦିରରେ ମାଦଳା ପାଞ୍ଜି କରଣମାନେ ଲେଖୁଥିଲେ । ଏହା ସେମାନଙ୍କର ପୁରୁଷାନୁକ୍ରମିକ ସେବା ଥିଲା । ଏହି ଲେଖନକାର କରଣମାନେ ପାଞ୍ଚଭାଗରେ ବିଭକ୍ତ ଥିଲେ । ଯଥା -କୋଠ କରଣ, ବଇଠି କରଣ, ତଢ଼ାଉ କରଣ, ଦେଉଳ କରଣ ଓ ପାଞ୍ଜିଆ କରଣ । କୋଠକରଣ ରାଜ ପ୍ରସାଦରୁ ବିବରଣୀ ସଂଗ୍ରହ କରି ସଂଗ୍ରହ କରୁଥିଲେ, ବଇଠି କରଣ ସଂଗୃହୀତ ବିବରଣୀରୁ ଲିପିବଦ୍ଧ ଯୋଗ୍ୟ ବିବରଣୀ ଚୟନ କରୁଥିଲେ, ତଢ଼ଉ କରଣ ସେହି ବିବରଣୀ ଗୁଡ଼ିକ ବିଭାଗୀକରଣ କରି କେଉଁ ବିବରଣୀ କେଉଁ ବିଭାଗରେ ଉଲ୍ଲିଖିତ ହେବ ତାହା ନିର୍ଣ୍ଣୟ କରୁଥିଲେ, ଦେଉଳ କରଣ ମନ୍ଦିରରେ ପାଞ୍ଜିପାଠ କରୁଥିଲେ ଏବଂ ପାଞ୍ଜିଆ କରଣ ନକଲ ଲେଖି ଭଣ୍ଡାରଘରେ ସଂରକ୍ଷଣ କରୁଥିଲେ । ମାଦଳାପାଞ୍ଜି ରାଜଖଞ୍ଜା, ଦେଶଖଞ୍ଜା, କର୍ମାଙ୍ଗୀ, ଦିନଖଞ୍ଜି ଓ ଚକଡ଼ା ପ୍ରଭୃତି ପାଂଚି ଭାଗରେ ବିଭକ୍ତ ଥିଲା । ଗଣେଶ ଚତୁର୍ଥୀ ଓ ଶ୍ରୀ ପଂମୀରେ ମାଦଳା ପାଞ୍ଜିରେ ସକଳ ବିଭାଗ ଏକତ୍ରିତ ହୋଇ ପୂଜା ହେଉଥିଲା । ଏହି ପାଞ୍ଜିଗୁଡ଼ିକ ରାଜାନଅରରେ ,ତଢ଼ାଉ କରଣଙ୍କ ଗୃହରେ ଓ ଦେଉଳକରଣଙ୍କ ଗୃହରେ ସଂରକ୍ଷିତ ହୋଇ ରହୁଥିଲା । ଶ୍ରୀ ମନ୍ଦିରରେ ମାଦଳାପାଞ୍ଜି ବ୍ୟତୀତ ଅନେକ ରାଜ୍ୟରେ ରାଜବଂଶାବଳୀ ପାଞ୍ଜି ଆକାରରେ ତାଳପତ୍ର ପୋଥିରେ ଲେଖା ହୋଇ ରହୁଥିଲା । ଖୋର୍ଦ୍ଧା ରାଜାଙ୍କ ରାଜବଂଶାବଳୀକୁ ଚଇନିଙ୍କ ଚକଡ଼ା କୁହାଯାଉଥିଲା । ଏତଦ୍‌ଭିନ୍ନ ମୟୂରଭଞ୍ଜ ରାଜବଂଶାବଳୀ ଓ କଳାହାଣ୍ଡି ମାଦଳା ପ୍ରଭୃତି ରହିଛି । ଏହି ସବୁ ପାଞ୍ଜି ଉପରେ ନିର୍ଭର କରି ପ୍ରାଥମିକ ପର୍ଯ୍ୟାୟରେ ଓଡ଼ିଶାର ଇତିହାସ ଲେଖାଯାଉଥିଲା ।







ଇଂରେଜମାନେ ଓଡ଼ିଶା ଅଧିକାର କରିବା ପର୍ଯ୍ୟନ୍ତ ତାଳପତ୍ର ପୋଥିର ବହୁଳ ବ୍ୟବହାର ଥିଲା । ତତ୍‌ପରେ ଓଡ଼ିଶାରେ କାଗଜରେ ଲେଖିବା ଆରମ୍ଭ ହୋଇଥିଲେ ହେଁ ଲୋକମାନେ ପ୍ରଥମେ ଏହାକୁ ଗ୍ରହଣ କରିନଥିଲେ । କାଗଜରେ ଲେଖିବା ପାପ ବୋଲି ବିଚାରି ଅନେକ ତାଳପତ୍ର ପୋଥି ଲିଖନ ଅବ୍ୟାହତ ରଖିଥିଲେ । ପରେ ଓଡ଼ିଆମାନେ ଆଧୁନିକ ଶିକ୍ଷାପ୍ରଭାବରେ କାଗଜରେ ଲେଖିଲେ ହେଁ ପୋଥିର ବ୍ୟବହାର କରିନଥିଲେ । ଧର୍ମକାର୍ଯ୍ୟ, ମାଙ୍ଗଳିକ କାର୍ଯ୍ୟ ଓ ଜାତକ ପ୍ରଭୃତି ଆଜି ସୁଦ୍ଧା ତାଳପତ୍ରରେ ଲେଖାଯାଉଛି । ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନତା ପରେ ପୋଥି ବ୍ୟବହାର କମିନଥିଲା । କିନ୍ତୁ ସେତେବେଳକୁ ଓଡ଼ିଶାର ପୁରପଲ୍ଲୀରେ ଲକ୍ଷଲକ୍ଷ ସଂଖ୍ୟାରେ ପୋଥି ଗଚ୍ଛିତ ରହିଥିଲା । ରାଜ୍ୟସଂଗ୍ରହାଳୟ, ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ କେତେକ ସଂଗ୍ରାହକଙ୍କ ଦ୍ୱାରା ହଜାର ହଜାର ସଂଖ୍ୟାରେ ତାଳପତ୍ରପୋଥି ସଂଗୃହୀତ ହୋଇ ଥିଲେ ମଧ୍ୟ ହଜାର ହଜାର ପୋଥି ଅଦ୍ୟାବଧି ବିଭିନ୍ନ ବ୍ୟକ୍ତିଙ୍କ ଘରେ ରହିଛି । କେତେ ଯେ ପୋଥି ନଷ୍ଟ ହୋଇଯାଇଛି, ତାହାର ଇୟତ୍ତା ନାହିଁ । ଗବେଷକ କେଦାରନାଥ ମହାପାତ୍ର, ପଣ୍ଡିତ ନୀଳମଣି ମିଶ୍ର, ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଓ ବିମଳ କିଶୋର ମିଶ୍ର ପ୍ରଭୃତି ଓଡ଼ିଶାର ଗ୍ରାମେ ଗ୍ରାମେ ବହୁ ପୋଥି ସଂଗ୍ରହ କରି ରାଜ୍ୟ ସଂଗ୍ରହାଳୟକୁ ଆଣିଛନ୍ତି । ତାଙ୍କ ପରେ ପୋଥିସଂଗ୍ରହ ନିମିତ୍ତ ସରକାରଙ୍କ ତରଫରୁ ବିଶେଷ ଉଦ୍ୟମ ହୋଇନାହିଁ । ବର୍ତ୍ତମାନ ପୋଥିସଂଗ୍ରହ କେବଳ କାଗଜ କଲମରେ ଚାଲିଛି, କାହାର ଆନ୍ତରିକତା ନାହିଁ । ଦାଶରଥି ପଟ୍ଟନାୟକ ଓ ଅନ୍ୟାନ୍ୟ ସଂଗ୍ରାହକ ମଧ୍ୟ ବହୁ ପୋଥି ସଂଗ୍ରହ କରିଛନ୍ତି । ସରକାରୀସ୍ତର ଓ ବେସରକାରୀ ସ୍ତରରେ ସଂଗୃହୀତ ପୋଥି ଗୁଡ଼ିକର ସଂରକ୍ଷଣ ମଧ୍ୟ ସନ୍ତୋଷଜନକ ନୁହେଁ । ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ପୋଥିମାନଙ୍କ ମଧ୍ୟରୁ କେତେକ ଉପାଦେୟ ପୋଥି ପୁସ୍ତକାକାରରେ ପ୍ରକାଶିତ ହୋଇଛି । ଏଥିନିମିତ୍ତ ଗୋଟିଏ ପ୍ରକାଶନ ବିଭାଗଖୋଲା ଯାଇଛି । ବର୍ତ୍ତମାନ ମଧ୍ୟ ଅନେକ ଉପାଦେୟ ପୋଥି ଅପ୍ରକାଶିତ । ପ୍ରାଥମିକ ପର୍ଯ୍ୟାୟରେ ପଣ୍ଡିତ ନୀଳମଣି ମିଶ୍ର ପ୍ରଭୃତି କେତେଜଣ ଓଡ଼ିଶାରେ ପୋଥି ଉପରେ ଗବେଷଣା ଆରମ୍ଭ କରିଥିଲେ । ବେସରକାରୀ ସ୍ତରରେ ସଂଗୃହୀତ ପୋଥିଗୁଡ଼ିକ ମଧ୍ୟରୁ କୌଣସି ଉପାଦେୟ ପୋଥି ପ୍ରକାଶିତ ହୋଇନାହିଁ ଅଥବା ତହିଁ ଉପରେ ଗବେଷଣା ହୋଇନାହିଁ । ସରକାରୀଭାବରେ କେତେ ପୋଥି ସଂଗ୍ରହ ହୋଇଛି ତାହାର ହିସାବ ଥିଲେ ହେଁ ବେସରକାରୀ ଭାବରେ କେତେ ପୋଥି ସଂଗ୍ରହ ହୋଇଛି ତାହାର ହିସାବ ନାହିଁ । ଦୁଃଖର ବିଷୟ ହେଉଛି, ପୋଥି ସଂଗ୍ରହ ଓ ସଂରକ୍ଷଣ ନିମିତ୍ତ କୌଣସି ନିୟମାବଳୀ ପ୍ରଣୟନ କରାଯାଇନାହିଁ ଅଥବା ଏଥି ନିମିତ୍ତ କୌଣସି ଯୋଜନା ନାହିଁ । ଅନେକ ପୋଥି ସଂଗ୍ରହ ହୋଇଥିଲେ ମଧ୍ୟ ହଜାର ହଜାର ପୋଥି ସଂଗ୍ରହ ହୋଇପାରି ନାହିଁ । ବର୍ତ୍ତମାନ ମଧ୍ୟ ବିଭିନ୍ନ ମଠ, ମନ୍ଦିର ଓ ବ୍ୟକ୍ତିବିଶେଷଙ୍କ ଗୃହରେ ଶହ ଶହ ପୋଥି ଗଚ୍ଛିତ ରହିଛି । ଏହି ଗଚ୍ଛିତ ପୋଥିରୁ ବହୁପୋଥି ସଂରକ୍ଷଣ ଅଭାବରୁ ନଷ୍ଟ ହେଲାଣି । ସେଥିପ୍ରତି କାହାର ନିଘା ନାହିଁ ।

ଭାରତର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଓଡ଼ିଶାରେ ବହୁ ପରିମାଣରେ ପୋଥି ରହିଛି । ଏହି ପୋଥିଗୁଡ଼ିକରେ ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଓ ଇତିହାସ ପ୍ରଚ୍ଛନ୍ନ ଭାବରେ ଲୁକ୍କାୟିତ । ଲିପିର ବିକାଶ ଧାରା, ବିଭିନ୍ନ କଳାମାନଙ୍କର ବିକାଶଧାରା, ଓଡ଼ିଶୀ ଚିତ୍ରର ବିକାଶ ଧାରା, ଓଡ଼ିଆ ଲୋକକଥା ଓ କିମ୍ବଦନ୍ତୀ ଓ ସାମାଜିକ ଚିତ୍ରର ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ପୋଥିରୁ ହିଁ ମିଳିଥାଏ । ଏହି ଦୃଷ୍ଟିକୋଣରୁ ପୋଥି ହେଉଛି ଓଡ଼ିଶାର ଜାତୀୟ ସମ୍ପତ୍ତି । ପୋଥି ସଦୃଶ ଦୁର୍ଲଭ ସାରସ୍ୱତ ସମ୍ପଦ ତଥା ଜାତୀୟ ସମ୍ପତ୍ତିର ସଂଗ୍ରହ, ସଂରକ୍ଷଣ ତଥା ଗବେଷଣା ନିମିତ୍ତ ସ୍ୱତନ୍ତ୍ର ନିୟମାବଳୀ ପ୍ରଣୟନ ଓ କାର୍ଯ୍ୟକାରିତାର ଆବଶ୍ୟକତା ରହିଛି ।



ଓରିଏଣ୍ଟାଲ୍ ଇନ୍‌ସ୍ୟୁରାନ୍‌ସ୍ ବିଲ୍ଡିଂ
ଦକ୍ଷିଣକାଳୀ ମାର୍ଗ, ଢେଙ୍କାନାଳ
ଦୂରଭାଷ - ୦୬୭୬୨-୨୨୫୫୨୨







# ପୁଷ୍ପିକା

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ଓଡ଼ିଶାରେ ପୋଥିସଂଗ୍ରହ ପ୍ରତି ଉପଯୁକ୍ତ ଧ୍ୟାନ ଏପର୍ଯ୍ୟନ୍ତ ଦିଆଯାଇ ନାହିଁ । ବିଶ୍ୱବିଦ୍ୟାଳୟ, ମିଉଜିଅମ୍ ବା ଅନ୍ୟ ଯେଉଁ ସଂସ୍ଥାମାନେ ଏ ଦିଗରେ ପ୍ରଯତ୍ନ କରୁଛନ୍ତି, ତାହା ଅୟମାରମ୍ଭ ମାତ୍ର । ଏପରି ଅବସ୍ଥାରେ ପୋଥିର ଶେଷ କଥା ସମ୍ବନ୍ଧରେ ଆଲୋଚନା କରିବା ପ୍ରଶ୍ନ ଉଠୁଛି ବା କେଉଁଠୁ ? ପୋଥିର ପ୍ରାଚୀନତା, ବିଷୟବସ୍ତୁ, ଲିପି, ଉପକରଣ ଆକାର, ଚିତ୍ରସଜ୍ଜା, ପଟାର କାରୁକାର୍ଯ୍ୟ ଆଦି ବିଭିନ୍ନ ବିଷୟରେ ଆଲୋଚନା କରିବାର ଯଥେଷ୍ଟ ଅବକାଶ ରହିଚି । କିନ୍ତୁ ଅପେକ୍ଷାକୃତ ଅବହେଳିତ ପୋଥିପୁଷ୍ପିକାର ଏକ ତୁଳନାତ୍ମକ ଅଧ୍ୟୟନ ହିଁ ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

'ପୁଷ୍ପିକା' କଥାଟି ଓଡ଼ିଆ ସାହିତ୍ୟ ଓ ସମାଲୋଚନା କ୍ଷେତ୍ରରେ ଠିକ୍ ଅଜଣା ନୋହିଲେ ସୁଦ୍ଧା ଅପ୍ରଚଳିତ । ତେଣୁ ଏ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ଏହାର ଠିକ୍ ଅର୍ଥ ବିଶ୍ଳେଷଣ କରି ବୁଝିବା ଦରକାର । ଯେକୌଣସି ଛପାବହି ଖୋଲିଲେ ତାହାର ଆରମ୍ଭ କିମ୍ବା ଶେଷରେ ମୁଦ୍ରାକରର ନାମ ଦେଖିବାକୁ ମିଳିଥାଏ; କିନ୍ତୁ ଏ ଦେଶରେ ଯେତେବେଳେ ଛାପାଖାନା ନଥିଲା, ସେତେବେଳେ ବହୁ କଷ୍ଟ ସହି ଯେଉଁ ଶହ ଶହ ଲୋକ ହାତରେ ପୋଥି ଲେଖି ଏ ଦେଶର ଶିକ୍ଷା ଓ ସଂସ୍କୃତିକୁ ବଞ୍ଚାଇ ରଖୁଥିଲେ ସେମାନଙ୍କର ସମ୍ବାଦ କିଏ ରଖିଚି ? କେହି ରଖୁ ବା ନରଖୁ, ସେମାନେ କିନ୍ତୁ ନିଜ ପରିଚୟ ଦେବାର କୌଣସି କାର୍ପଣ୍ୟ ପ୍ରକାଶ କରିନାହାନ୍ତି । ପୋଥି ଲେଖା ଶେଷ ହୋଇଗଲେ ଶେଷରେ ଲିପିକାର ନିଜ ପରିଚୟ ଆଦି ଯେଉଁ କେତେକ ପଙ୍କ୍ତି ତହିଁରେ ଯୋଡ଼ି ଦେଇଥାଏ, ତାହା ହିଁ ପୁଷ୍ପିକା । ବଙ୍ଗ ଭାଷା ଓ ସାହିତ୍ୟର ଅନ୍ୟତମ ସମାଲୋଚକ ଶ୍ରୀଯୁକ୍ତ ତପନମୋହନ ଚଟ୍ଟୋପାଧ୍ୟାୟ କହନ୍ତି, "ପୁଂଥି ନକଲ କରା ସାଙ୍ଗ କରେ, ପୁଂଥିର ଶେଷେ ଲିପିକାର ଏକଟା ଲେଜୁଡ଼୍ ଜୁଡ଼େ ଦିତେନ । ତା'ତେ ସାଧାରଣତଃ ଲିପିକାରେର ଏକଟା ସଂକ୍ଷିପ୍ତ ପରିଚୟ ଥାକେତ । ଏଇ ଲେଜୁଡ଼ର ନାମଇ ପୁଷ୍ପିକା । ଇଂରାଜୀତେ ଏଇ ନାମ ପୋଷ୍ଟ କଲୋଫନ ।"[୧] ଅଧ୍ୟାପକ ସୁକୁମାର ସେନଙ୍କର ମତରେ, "ପୁଷ୍ପିକା କଥାଟିର colophon ଅର୍ଥର ଉପରି ବୋଧହୁଏ ଲାଉ, କଖାରୁ ଆଦି ଫଳର ସାଦୃଶ୍ୟ ହେତୁ ହୋଇଚି । ଏ ଫଳର ପରିପୂର୍ଣ୍ଣତା ହୋଇଗଲେ ସୁଦ୍ଧା ଶୁଖିଲା ଫୁଲ ଲାଗିଥାଏ ।[୨] "ଶ୍ରୀଯୁକ୍ତ ଚିନ୍ତାହରଣ ଚକ୍ରବର୍ତ୍ତୀଙ୍କ ଭାଷାରେ କହିଲେ, ଏହା ହେଉଛି "ପୋଥିର ଶେଷ କଥା ।"[୩]

ଓଡ଼ିଆ ଓ ବଙ୍ଗଳା ପୋଥିର ପୁଷ୍ପିକା ତୁଳନା କରି ଦେଖିଲେ ପ୍ରାୟ ଏକପ୍ରକାର ରୀତି ଆଖିରେ ପଡ଼େ । ବଙ୍ଗଳା ପୋଥି ସମ୍ବନ୍ଧରେ ବିଶ୍ୱଭାରତୀ ପୋଥିଶାଳାରେ ରକ୍ଷିତ ପାଣ୍ଡୁଲିପିଗୁଡ଼ିକୁ ଅଧ୍ୟୟନ କରି ଅଧ୍ୟାପକ ପଂାନନ ମଣ୍ଡଳ ଯାହା ଲେଖିଛନ୍ତି ତାହାର ଅନୁବାଦ — "ସମାଜତତ୍ତ୍ୱ"ବିଷୟରେ ଗବେଷଣାରତ ପ୍ରତ୍ୟେକଙ୍କ ନିକଟରେ ପୋଥି ପୁଷ୍ପିକାର ଲିପିକାରର ଆତ୍ମକାହାଣୀ ଅତ୍ୟନ୍ତ ମୂଲ୍ୟବାନ ଉପକରଣ । ପୋଥି ନକଲ କରିବା ପାଇଁ କିଏ କେତେ ଦକ୍ଷିଣା ପାଇଲେ; ଲୁଗା ଗାମୁଛା, କଉଡ଼ି ବା ଟଙ୍କା କିଏ କେତେ ପାଇଲେ, ପୋଥିର ମାଲିକ କିଏ, ପାଠକ କିଏ, ତାଙ୍କର ବିବରଣ ଓ ସ୍ତୁତିବାଦ, କେଉଁଠାରେ ବସି ଲେଖିଲେ, କେତେବେଳେ ପୋଥି ଲେଖା ସମାପ୍ତ ହେଲା, ତାହାର ସନ, ତାରିଖ, ବାର, ବେଳା, ତିଥି, ନକ୍ଷତ୍ର, ପ୍ରହର, ଦଣ୍ଡ, ପଳ, କେଉଁଆଡ଼େ ମୁହଁକରି ବସି ଲେଖା; ପରଗଣା, ପୌଜି, ସାକିମ୍, ମୋକାମ୍ ଏଗନେ  ଓ ସାରାର ସମସ୍ତ

(୧) ମଞ୍ଜରୀ, ୨ୟ ବର୍ଷ ୨ୟ ସଂଖ୍ୟା ୧୩୫୯ ।

(୨) ବିଚିତ୍ର ସାହିତ୍ୟ, ପୃ. ୨୨୬ ।

(୩) ସାହିତ୍ୟ ପରିଷତ୍ ପତ୍ରିକା, ୩ୟ-୪ର୍ଥ ସଂଖ୍ୟା, ୫୭ ବର୍ଷ ।







ବିବରଣ ଆମ୍ଭେମାନେ ଗ୍ରନ୍ଥ ଶେଷରୁ ଲିପିକାରର ପୁଷ୍ପିକା ଅଂଶରୁ ପାଉ । ଆହୁରି ମଧ୍ୟ ଲିପିକାରର ଆତ୍ମକାହାଣୀ, ଧର୍ମମତ, ଆଶା, ଆନନ୍ଦ, ଖ୍ୟାତି, ଅପବାଦ, ଗୃହବିବାଦ, ମୁଦ୍ରାଦୋଷ ଆଦି ସବୁ ଏଥିରୁ ମିଳେ ।"(୪) ଏହା ଯେ ପୋଥି ପୁଷ୍ପିକା ସମ୍ବନ୍ଧରେ ଶେଷକଥା,ତାହା ନୁହେଁ । ଏହା ବ୍ୟତୀତ ଆବଶ୍ୟକ ଅନାବଶ୍ୟକ ବହୁ ବିବରଣ ମଧ୍ୟ ପୋଥି ପୁଷ୍ପିକା ସଲଗ୍ନ ଥିବା କଥା ଦେଖାଯାଏ ।

ଓଡ଼ିଶା ବିଭିନ୍ନ ଧର୍ମର ସମନ୍ୱୟ କ୍ଷେତ୍ର । ଶ୍ରୀ ଜଗନ୍ନାଥ ପୀଠର ମହିମା ଦ୍ୱାରା ଆକୃଷ୍ଟ ହୋଇ ବହୁ ସିଦ୍ଧ ସାଧକ ବିଭିନ୍ନ ସମୟରେ ପୁରୀ ଆସିଛନ୍ତି ଓ ସେମାନଙ୍କର ସାମ୍ପ୍ରଦାୟିକ ଧର୍ମମତର ସଙ୍କେତ କିଛି ନା କିଛି ପୁରୀରେ ରଖିଯାଇଛନ୍ତି । ବିଭିନ୍ନ ମଠଗୁଡ଼ିକ ସାଂସ୍କୃତିକ କେନ୍ଦ୍ର ରୂପେ ବହୁକାଳୁ ଚଳିଆସୁଛି । ଧର୍ମ ଚର୍ଚ୍ଚା ସଙ୍ଗେ ସଙ୍ଗେ ଧର୍ମଗ୍ରନ୍ଥ ଲିଖନ, ତାହାର ସଯତ୍ନ ରକ୍ଷା ଓ ପ୍ରଚାର ଏହି ସଂସ୍ଥାଗୁଡ଼ିକର ଅନ୍ୟତମ କର୍ତ୍ତବ୍ୟରୂପେ ବିବେଚିତ ହୋଇଥାଏ । ଏହା ବ୍ୟତୀତପ୍ରତ୍ୟେକ ଗ୍ରାମର ଭାଗବତ ଘରମାନଙ୍କରେ 'ପୋଥିଗାଦି' ଗୁଡ଼ିକ ଧର୍ମ ଓ ସାହିତ୍ୟ ଚର୍ଚ୍ଚାର ଗୋଟିଏ ଗୋଟିଏ କେନ୍ଦ୍ର ଥିଲା । ଜଗନ୍ନାଥ ମନ୍ଦିରରେ ମାଦଳା ପାଞ୍ଜି ଓ ଅନ୍ୟାନ୍ୟ କେତେକ ପୋଥି ରଖାଯାଇଥିବା ପରି ବିଭିନ୍ନ ଗ୍ରାମର ମନ୍ଦିର ସହିତ ସମ୍ପୃକ୍ତ ହୋଇ ପୋଥି ଘରମାନ ଥିଲା । ଏସବୁ କହିବାର ତାତ୍ପର୍ଯ୍ୟ ହେଉଛି ଯେ ପୋଥି ଲିଖନ, ସଂଗ୍ରହ, ସଂରକ୍ଷଣ ଓ ପ୍ରଚାର ଆଦି ବିଷୟକୁ ସେ ସମୟରେ ପବିତ୍ର କର୍ତ୍ତବ୍ୟ ରୂପେ ମନେ କରାଯାଉଥିଲା । ଗୋଟିଏ ବଙ୍ଗଳା ପୋଥି ପୁଷ୍ପିକାରେ ଲେଖନକାର ନିଜ ଦାରିଦ୍ର୍ୟ ଓ ଦୁଃଖଦୁର୍ଦ୍ଦଶା ବର୍ଣ୍ଣନା କରି ସାରିବା ପରେ ମଧ୍ୟ ଜନ୍ମଜନ୍ମାନ୍ତରେ ଯେପରି ସେଇ ଲେଖନକାର ରୂପେ ଜନ୍ମଗ୍ରହଣ କରନ୍ତି ସେଥିପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ପୁଣ୍ୟାର୍ଜନ ଲାଳସା ହେଉଚି ପୋଥିନକଲର କାରଣ । ସମସ୍ତ ଅଭାବ ଅସୁବିଧା ସତ୍ତ୍ୱେ ପୂଣ୍ୟାର୍ଜନର ଏ ସହଜ ପନ୍ଥା ବା ଲେଖନକାର ଛାଡ଼ନ୍ତେ କିପରି ? ଧର୍ମଶାସ୍ତ୍ରରେ ପୁସ୍ତକ ଦାନର ମାହାତ୍ମ୍ୟ କୀର୍ତ୍ତିତ ହୋଇଛି । କେହି କେହି ଲେଖନକାର ପୁଷ୍ପିକାରେ ମଧ୍ୟ ଏ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି । ଏଲାହାବାଦରୁ ପ୍ରକାଶିତ 'ପ୍ରଶସ୍ତି ସଂଗ୍ରହ' ଗ୍ରନ୍ଥରେ ଲିପିକାରମାନଙ୍କର ଏପରି ବହୁ ଉକ୍ତି ସନ୍ନିବିଷ୍ଟ ହୋଇଛି ।(୫) ପୋଥି ନକଲ କଲେ ଯେଉଁ ପୁଣ୍ୟଲାଭ ହୁଏ ସେ ସମ୍ବନ୍ଧରେ ଉଲ୍ଲେଖ ମଧ୍ୟ ଏଥିରେ ଅଛି । ପାଣ୍ଡିତ୍ୟାନୁରାଗ ପୋଥିସଂଗ୍ରହର କାରଣ ହେଲେ ହେଁ ଧନୀଲୋକ ଗୌରବ ଓ ଆଭିଜାତ୍ୟ ପ୍ରକାଶ କରିବା ପାଇଁ ନିଜ ନିଜ ଘରେ ପୋଥି ସଂଗ୍ରହ କରି ରଖୁଥିଲେ । ପଣ୍ଡିତ ଲୋକ କିମ୍ବା ଦେଉଳମାନଙ୍କୁ ପୋଥି ଦାନ କରି ଏମାନଙ୍କ ମଧ୍ୟରୁ ଅନେକ ଯେ ଗୌରବବୋଧ କରନ୍ତି ତାହା ପ୍ରଶସ୍ତି ସଂଗ୍ରହ ୨୧୩୭୫, ୩୮୦,୭୩୭ ଓ 'ରୟାଲ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ' ପୋଥିବିବରଣ ୫। ୩୭୩୫ରୁ ଜଣାଯାଏ । ଛାପାଖାନା ପ୍ରତିଷ୍ଠା ହୋଇଯିବା ପରେ ମଧ୍ୟ ବହୁ ଧନୀ ଓ ଧର୍ମପ୍ରାଣ ବ୍ୟକ୍ତି ଧର୍ମଗ୍ରନ୍ଥ ଛପାଇ ବିତରଣ କରିବାର ଦୃଷ୍ଟାନ୍ତ ମଧ୍ୟ ରହିଛି । ବିହାରୀଲାଲ ଗୀତା ଓ ଜଗବନ୍ଧୁ ସିଂହଙ୍କର ଗୀତା ଅନୁବାଦ ଯଥାକ୍ରମେ ଦର୍ପଣୀ ରାଜା ଓ ଏମାର ମଠାଧୀଶ ଛପାଇ ବିନାମୂଲ୍ୟରେ ବିତରଣ କରିଥିବା କଥା ସୁବିଦିତ ।

ଅଭାବ ଅସୁବିଧା ହେତୁ ହେଉ କିମ୍ବା ସଂଗ୍ରହ ପ୍ରଚେଷ୍ଟା ହେତୁ ହେଉ ମୂଲ୍ୟ ଗ୍ରହଣ କରି ପୋଥି ବିକ୍ରୟ କରିଥିବାର ଉଦାହରଣ ଦେଖିବାକୁ ମିଳେ । ମୋ ନିକଟରେ ଥିବା 'ଇତିହାସ' ପୋଥିର ପୁଷ୍ପିକାଟି ଏ ସମ୍ପର୍କରେ ଦେଖାଯାଇପାରେ ।

"ଇତିଶ୍ରୀ ଇତିହାସ ସମୂହେ ଗ୍ରନ୍ଥ ସମ୍ପୂର୍ଣ୍ଣ ନାମ ଏକଚାଳିଶ ଅଧ୍ୟାୟ । ଭିମସ୍ୟାପି × × ×ନ ବିଦତେ । ରାମଚନ୍ଦ୍ର ଦେବ ମହାରାଜାଙ୍କ ଶୁଭରାଜ୍ୟେ ସମସ୍ତ ୧୭ଅଙ୍କ କନ୍ୟା ୫ଦିନେ ଶ୍ରୀ ଇତିହାସ ପୋସ୍ତକ ସଦାଜୟେ ସମ୍ପୂର୍ଣ୍ଣ । ଯେ ପୁସ୍ତକ ଲେଖନକାର ନୂଆଗଡ଼ ବିସେରାଇପୁର ଶାସନର ମହାଜନ ମାଗୁଣି ରଥେ । ଯେ ପୁସ୍ତକ ଦକ୍ଷିଣା ଦେଇ ନେଲେ

(୪) ପୁଂଥି ପରିଚୟ, ୧ମ ଖଣ୍ଡ, ଭୂମିକା ପୃ. ୯।

(୫) ୧ମ ଖଣ୍ଡ, ପୃ. ୧୯,୨୭,୩୧, ୩୮, ୪୩, ୪୬ ଓ ୭୨ ଦ୍ରଷ୍ଟବ୍ୟ।





ରାମ୍ପୁର ବିସେ ନିଳକଣ୍ଠପୁର ରହଣିଗୁଡ଼ିଆ ପଧାନ ଗଙ୍ଗାଧର ମହାପାତ୍ରଙ୍କର । ସୁଜନଜନମାନେ ସୁଧ ଅସୁଧ ପୁରୋଇ ଗାଇବ । ଲେକନକାରର ଦୋଷ ନ ଘେନିମ । ଅଧମ ମାଗୁଣି ରଥଙ୍କୁ ଭଗବାନେ ରକ୍ଷା କରିବେ ।"

ଏହି ପୁଷ୍ପିକାର 'ଭିମସ୍ୟାପି' × × ନବିଦ୍ୟତେ' ସମ୍ବନ୍ଧରେ ପରେ ଆଲୋଚନା କରାଯାଇଥିବାରୁ ଶ୍ଳୋକଟି ଏଠାରେ ବାଦ୍ ଦିଆଯାଇଛି । ମନେ ରଖିବା ଉଚିତ ଯେ ପୋଥିର ମୂଲ୍ୟ ସ୍ଥାନରେ ସାଧାରଣତଃ 'ଦକ୍ଷିଣା' କଥା ବ୍ୟବହାର କରାଯାଇଥାଏ । ଏଠାରେ ଦକ୍ଷିଣାର ପରିମାଣ ସମ୍ବନ୍ଧରେ ଅବଶ୍ୟ କିଛି ଉଲ୍ଲେଖ ନାହିଁ । ତୁଳନାତ୍ମକ ଭାବରେ ନିମ୍ନ ବଙ୍ଗଳା ପୁଷ୍ପିକା ଦୁଇଟି ବିଚାର କରାଯାଇପାରେ ।

"ଇହାର ଦକ୍ଷିଣା ୧ ଜୋଡ଼ କାପଡ ଆର ୨ ତଙ୍କା"

(କାଳିକା ମଙ୍ଗଳ । ଏସିଆଟିକ୍ ସୋସାଇଟି ୯।୩୨୨)

"ଇହାର ଦକ୍ଷିଣା ସମାନ୍ୟତା କ୍ରମେ ଅନ୍ନ ସତ୍ରେ ପରିପାଲ୍ୟ ହଇୟା ସଶ୍ରଦ୍ଧ୍ୟା ହଇୟା ପୁସ୍ତକ ଲେଖିୟା ଦିଲାମ ନଗଦ ଦକ୍ଷିଣାହ ପାଇଲାମ ତାର ପର ରୋଜକାରହ ବିତସର ବ୍ୟାପିୟା ପାଇବାର ଆଗ୍ୟା ହଇଲ ।" (ସୁକୁମାର ସେନ, ବଙ୍ଗଳା ସାହିତ୍ୟର ଇତିହାସ, ପୃ;୪୬୫, ପାଦଟୀକା-୪) ।

ଏହି ଆଲୋଚନା ପ୍ରସଙ୍ଗରେ ଓଡ଼ିଆ ପୋଥିର ଆଉ ଗୋଟିଏ କୌତୁକପ୍ରଦ ଉଦାହରଣ ଦେଖାଯାଇପାରେ । ଏହି ପୋଥିଟି ହେଉଚି ଭାଗବତ ୧୧ଶସ୍କନ୍ଧ । ସଂପୂର୍ଣ୍ଣ ପୋଥିଟି ବିଧ୍ୱସ୍ତ ହୋଇଯାଇଚି ଓ ବହୁ ଆୟାସ ସହକାରେ ମୁଁ କେବଳ ତାର ଶେଷ ପତ୍ରଟି ଉଦ୍ଧାର କରିବାରେ ସମର୍ଥ ହୋଇଚି । ତାହାର ପୁଷ୍ପିକାଟି ଏଠାରେ ଅବିକଳ ଉଦ୍ଧାର କରି ଦିଆଗଲା ।

"୩୨।୩୨।୩୨। ୩୨। ୩୨। ୩୨। ୩୨। ୩୨। ୩୨। ୩୨ ।୩୨।୩୨।୩୨।୩୨।ଶ୍ରୀ।ଶ୍ରୀ।ଶ୍ରୀ।ଶ୍ରୀ। ଶ୍ରୀ।ଶ୍ରୀ ଶ୍ରୀ । ଭିମସ୍ୱାପି ରଣେ ଭଙ୍ଗୋ । ମୁନିରପି ମତୀଭ୍ରମ । ଯଦ୍ୟ ସୁଧିମ ସୁଧିାମା । ମମଦୋସ ନ ବିଦ୍ୟତେ ।°।°। ଶ୍ରୀ ବିରକେସ୍ୱରୀ ଦେବ ମହାରାଜାଙ୍କ ଅଯେ ସୁଭରାଜ୍ୟେ । ସମସ୍ତ ୫କନ୍ୟ ୨୨ନେ ଶୁକ୍ରବାରେ ଶୁକ୍ଳପକ୍ଷ ମହାଅଷ୍ଟମି ବେଳ ଦୁଇଘଡ଼ୀ ଠାରେ ଏ ପୋସ୍ତେକ ସମ୍ପୁନ୍ୟ ହୋଇଲା । ° । ° । ଆହେ ସୁଗ୍ୟଜନ ମାନେ ସୁଧି ଅସୁଧି ପୁରୋଇ ଗାଇବ ଲେଖନକାର ଗୋବିନ୍ଦଂର ଦୋସ ନ ଧରିବ । ଶ୍ରୀ ସୁଭମସ୍ତୁ । ଶ୍ରୀ ସୁଭମସ୍ତୁ । ଶ୍ରୀ ସୁଭମସ୍ତୁ । ।୦ ।୦ ।୦ ।୦ ।୦ ।୦ ।୦ ।୦ । ଆତାପି ଭକ୍ଷତେ ଯେର୍ଣ୍ଣ । ବାତାପି ଯ ମହାଃସୁର । ସମୁଦ୍ର ସୋସିତଂ ପିର୍ଣ୍ଣ । ଅଗସ୍ତିବ ବୋନଳ ।୧।୧।୧।୧।୧।୧।୧। ୧।୧।୧।୧।୧।୧।୧।୧।୧।୧।୧।୧।୧।୧।"

ବର୍ତ୍ତମାନ ପାଇଁ ଏହି ପୁଷ୍ପିକାର ସମସ୍ତ ଅଂଶ ବାଦ୍ ଦେଇ କେବଳ ଶେଷ ଶ୍ଳୋକଟି ବିଚାର କରାଯାଉ । ପୁଷ୍ପିକାର ବିଷୟବସ୍ତୁ ସହ ଶ୍ଳୋକଟିର କୌଣସି ସମ୍ପର୍କ ନଥିବା ପରି ଜଣାଯାଉଛି । ପୁଷ୍ପିକା ଶେଷରେ ଅକାରଣ ସକାରଣ ଲେଖକର ପ୍ରିୟଶ୍ଳୋକ ବା ପ୍ରଚଳିତ ସୁଭାଷିତ ଯୋଡ଼ିଦେବାର ବହୁ ଉଦାହରଣ ରହିଛି । ମୁଁ ଶ୍ରୀ କେଦାରନାଥ ମହାପାତ୍ରଙ୍କଠାରୁ ଶୁଣିଛି ଯେ ଓଡ଼ିଶା ମିଉଜିୟମରେ ରକ୍ଷିତ କୌଣସି ଏକ ସଂସ୍କୃତ ପୋଥିର ପୁଷ୍ପିକାରେ ଲିପିକାର ଭୋଇବଂଶ ରାଜାମାନଙ୍କର ବଂଶାବଳୀ ଶ୍ଳୋକାକାରରେ ଲିପିବଦ୍ଧ କରିଛନ୍ତି । କିନ୍ତୁ ଏଇ ଶ୍ଳୋକଟିରୁ ଏହା ବ୍ୟତୀତ ଅଧିକ ସୂଚନା ମିଳୁଛି । ଶ୍ଳୋକଟି ଏଠାରେ ଅବଶ୍ୟ ଟିକିଏ ପରିବର୍ତ୍ତିତ (ଭୁଲ ?) ଭାବରେ ଲେଖାଯାଇଚି । ପ୍ରକୃତ ପକ୍ଷେ ବହୁ ପ୍ରଚଳିତ ଏଇ ଶ୍ଳୋକଟି ହେଉଚି—

"ଆତାପିର୍ଭକ୍ଷିତୋ ଯେନ ବାତାପିଶ୍ଚ ମହାସୁରଃ
ସମୁଦ୍ରଃ ଶୋଷିତୋ ଯେନ ସମେଃଗସ୍ତ୍ୟଃ ପ୍ରସୀଦତୁ ।"

କୌଣସିଠାରେ ଗୁରୁଭୋଜନ ହୋଇଗଲେ ସାଧାରଣତଃ ବ୍ରାହ୍ମଣମାନେ ପେଟରେ ହାତ ବୁଲେଇ ଏହି ଶ୍ଳୋକଟି ବୋଲିଥାନ୍ତି । ସମ୍ଭବତଃ ପୋଥି ଲିଖନ ଶେଷରେ ଲିପିକାର ଗୋବିନ୍ଦ ଭୁରିଭୋଜନ ଦ୍ୱାରା ଅପ୍ୟାୟିତ ହୋଇ ସେହି ଆନନ୍ଦକୁ ସମ୍ଭାଳି ନପାରି ପୋଥି ଶେଷରେ ଶ୍ଳୋକଟି ଯୋଡ଼ି ଦେଇଛନ୍ତି । ବହୁ ପ୍ରାଚୀନ କାଳରୁ ଯେ ପୋଥିବିକ୍ରୟ ପ୍ରଥା ଚଳୁଛି, ତାହାର ଉଦାହରଣ 'ପ୍ରଶସ୍ତି ସଂଗ୍ରହ' ଗ୍ରନ୍ଥରୁ ମିଳେ । ଖ୍ରୀଷ୍ଟୀୟ ୧୨ଶ ଶତକରେ ନକଲ ହୋଇଥିବା ଦୁଇଟି ପୋଥିର ଉଲ୍ଲେଖ (୧। ୧୬୧, ୧୫୭) ଏଥିରେ







ଦେଖାଯାଏ । ଏ ସମ୍ବନ୍ଧରେ ପୋଥି ନକଲର ପାରିଶ୍ରମିକାଦି ସଂକ୍ରାନ୍ତରେ ଶ୍ରୀ ଚିନ୍ତାହରଣ ଚକ୍ରବର୍ତ୍ତୀ ଲେଖିଛନ୍ତି, "ଊନବିଂଶ ଶତାବ୍ଦୀର ପ୍ରାରମ୍ଭେ ପୁଥି ନକଲେର ପାରିଶ୍ରମିକେର ହାର ଅତ୍ୟନ୍ତ ବେଶି ଛିଲ ବଲିୟା ରେଭାରେଣ୍ଡ ଓୟାର୍ଡ଼ ତାହାର ହିନ୍ଦୁଦିଗେର ଇତିହାସ, ସାହିତ୍ୟ, ଧର୍ମ ପ୍ରଭୃତି ବିଷୟକ ବିଖ୍ୟାତ ଗ୍ରନ୍ଥେ ଉଲ୍ଲେଖ କରିୟାଛେନ । ତିନି ଲିଖିୟାଛେନ, ସେଇ ସମୟେ ୩୨୦୦୦ ଅକ୍ଷର ନକଲ କରାଇତେ ବାରାଆନା ବା ଏକଟାକା ଦିତେ ହଇତ । ତାଁହାର ମତେ ଏଇ ହାରେ ମହାଭାରତେର ମତ ବିଶାଳ ଗ୍ରନ୍ଥେର ପୁଥି ନକଲ କରାଇତେ ପ୍ରଚୁର ଅର୍ଥବ୍ୟୟେର ପ୍ରୟୋଜନ । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧେ ଏଇ ହାର ବାଡ଼ିୟା ଚତୁର୍ଗୁଣ ହଇୟାଛିଲ । ଏସିଆଟିକ୍ ସୋସାଇଟି ଅବ ବେଙ୍ଗଲ୍ - ଏର ୧୮୬୯ଖ୍ରୀଷ୍ଟାବ୍ଦେର କାର୍ଯ୍ୟ ବିବରଣେ ପ୍ରକାଶିତ ରାଜେନ୍ଦ୍ର ଲାଲ ମିତ୍ରେରେ ଉକ୍ତି ହଇତେ ଜାନାଯାୟ ଯେ, ତଖନ ଏଇ ହାର ଛିଲ ହାଜାର ଶ୍ଳୋକ ପ୍ରତି ଚାରଟାକା ।"(୬)

ପୋଥିର ଲିଖନକାଳ ନିର୍ଦ୍ଦେଶ ସାଧାରଣତଃ ଓଡ଼ିଶା ରାଜାଙ୍କ ଅଙ୍କ ଅନୁଯାୟୀ କରାଯାଇଥିଲେ ମଧ, ସ୍ଥଳବିଶେଷରେ ସାଲ, ଶକାବ୍ଦ ଓ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବ୍ୟବହାର କରାଯାଇଛି । କେତେକ ପୋଥିରେ ଏକାସଙ୍ଗେ ଏଥି ମଧରୁ ଏକାଧିକ ସମୟ ଦିଆଯାଇଥିବାର ମଧ ଦେଖାଯାଏ । ଲିପିକାର କେବଳ ବର୍ଷ ନିର୍ଦ୍ଦେଶ କରି ସନ୍ତୁଷ୍ଟ ନୁହନ୍ତି । ସେ ଦିନ, ବାର, ବେଳା, ତିଥି, ପ୍ରହର, ଘଡ଼ି, ଦଣ୍ଡ ଆଦି ବିବରଣ ମଧ ଦେଇଛନ୍ତି । ସଙ୍ଗେ ସଙ୍ଗେ ଲିଖନ ସ୍ଥାନ ଓ ନିଜ ନିଜ ବାସସ୍ଥାନ ସମ୍ବନ୍ଧରେ ଟିକିନିଖି ବିବରଣ ମଧ ଅନେକ ପୋଥିରେ ଦେଖିବାକୁ ମିଳେ । ଉପରେ ଦିଆଯାଇଥିବା ପୁଷ୍ପିକା ବ୍ୟତୀତ ଏଠାରେ ଆଉ କେତୋଟି ପୁଷ୍ପିକା ଉଦ୍ଧାର କରାଗଲା ।

(୧) ଓଡ଼ିଶା ମିଉଜିୟମରେ ଥିବା ଧରଣୀଧର ଟୀକାସହ ଗୀତଗୋବିନ୍ଦ ପୋଥିର ପୁଷ୍ପିକା—

"ସମାପ୍ତିଶ୍ଚାୟଂ ଗ୍ରନ୍ଥଃ । ଶ୍ରୀ ଶୁଭମସ୍ତୁ । ଶକାବ୍ଦ ୧୬୨୮୪ଶ୍ରୀ ହରେକୃଷ୍ଣ ଦେବ ମହାରାଜା ଗଜପତି ୨୪ଙ୍କ ଶ୍ରାହି । ଏ ପୁସ୍ତକ ସମାପ୍ତଃ । ଶ୍ରୀ ବାସୁଦେବ ଶର୍ମାତ୍ମଜ । ଶ୍ରୀ କୃଷ୍ଣକିଙ୍କର ଦେବ ଶର୍ମଣଃ ଲିଖିତଂ ମିତି ପୁସ୍ତକଂ । ସସ୍ଥାନ ଶ୍ରୀଖଣ୍ଡୀ ବିଷେ ଫରିଦପୁର ଗ୍ରାମ । ଓ ଶର୍ବ - ଶୁଭମସ୍ତୁ ।"

(୨) ଓଡ଼ିଶା ମିଉଜିଅମରେ ଥିବା ଯୁଗଦାସ ରଚିତ ନୃସିଂହ ଚରିତ ପୋଥିରେ ଥିବା ପୁଷ୍ପିକା—

"ଇତି ଶ୍ରୀନୃସିଂହ ଚରିତ ସଦାଯାଏ ସମ୍ପୂର୍ଣ୍ଣ । ଯଥା ଦୃଷ୍ଟୀ ତଥା ଲେଖନ । ହେ ସୁଜ୍ଞଜନମାନେ ସୁଧ ଅସୁଧ ପୂରଣ କରି ପଢ଼ୀବ । ଲେଖନକାରକୁ ଦୋଷ ନ ଦେବ । ବୀର ଗଯପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କୁଳବର୍ଗେଶ୍ୱର ବିରାଧି ବିରବର ପ୍ରତାପ ଶ୍ରୀ ମୁକୁନ୍ଦଦେବ ମୋହାରାଯେ ସମସ୍ତ ଅ୧୧ ଓ ୧୨ଙ୍କ କୁମ୍ଭ ସଂକର୍ମଣ ଦି ୧୪ନ ଫାଲଗୁନ । କୃଷ୍ଣ ପ୍ରତିପଦା ମଙ୍ଗଳବାରେ × × × ୨୪ଦଣ୍ଡଠାରେ ଏ ପୋସ୍ତକ ଲେଖା ବଢ଼ୀଲା । ଶ୍ରୀ ଶୁଭମସ୍ତୁ ।

(୩) ସେହି ଓଡ଼ିଶା ମିଉଜିଅମରେ ଥିବା କାହ୍ନୁଦାସଙ୍କ ରାମରସାମୃତ ସିନ୍ଧୁ ୧ମଖଣ୍ଡର ପୁଷ୍ପିକା—

"ଶ୍ରୀ ଶୁଭମସ୍ତୁ - ୦ - କିଷ୍କିନ୍ଧାକାଣ୍ଡ ସମ୍ପୂର୍ଣ୍ଣ ହେଲା । ୦ ୦ ୦ ୦ ପ୍ରଥମ ଖଣ୍ଡ କିଷ୍କିନ୍ଧା ଯାଏ ଅଛି । ଆଉ ଖଣ୍ଡକରେ ସିନ୍ଧୁରା ଠାରୁ ଉତରା ଯାଗ ସପ୍ତକାଣ୍ଡ ଅଛି । ଠା ଠା ଠା ଠା ଠା

ଭିମସ୍ୟାପି × × × ନ ବିଦ୍ୟେତେ । ଭଗ୍ନ ପୃଷ୍ଟକଟି × × × ପାଳଏତ୍ । ଏ ରାମର ସାମୃତ ପ୍ରଥମ ଖଣ୍ଡ ସମାପ୍ତ ହେଲା । ବେଳ ତିନୀ ପ୍ରହର ସରିକି ସମାପ୍ତ ହେଲା । ୧୯୧୬ସମ୍ବତ୍ସର ବୈଶାଖ କୃଷ୍ଣ ୬।୧ ବାରେ ଏ ଗ୍ରନ୍ଥ ସୀତାପତି କୃପାର ସମାପ୍ତ ହେଲା । ମୁଁ ଏ ଦୁଇଖଣ୍ଡ ଲେଖିଲା ସରିକି ବୟସ ୧୫ହୋଇଛି । ଏହାକୁ ଲେଖିକାର ପାଟହାତି ଶତପଥିଙ୍କର ଅଟଇ । ଯାଣିମ । ପୁସ୍ତକ ମଧ ପାଟକରିବର ଶତପଥିଙ୍କର । ଲେଖିକାରକୁ ରାବଣାରି ସର୍ବ ସଂକଟର ସର୍ବ

(୬) ସା. ପ. ପତ୍ରିକା, ପୃ.୫୭, ୩ୟ-୪ର୍ଥ ସଂଖ୍ୟା, ୫୭ ବର୍ଷ ।







ବିପତିର ମନକାମନା ସିଦ୍ଧ କରିବେ । ଆଦୃଶରେ ଯେପରି ଥିଲା ସେପରି ଲେଖିଲି । ଯାଣିମ ଦୋସ ନ ଧରିବ । ଠା । ଠା । ଠା । ଠା ॥

(୪) ବିଶ୍ୱଭାରତୀ ଓଡ଼ିଆ ପାଣ୍ଡୁଲିପି ସଂଗ୍ରହ ମଧ୍ୟରେ ଥିବା ଗୋଟିଏ ପୋଥିର ପୁଷ୍ପିକା—

"ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ଲବକୋଟୀ କଲ୍ୟାଟ କଳେବର ବୀରାଧି ବୀରବର ପ୍ରତାପ ବୀର ମୁକୁନ୍ଦଦେବଙ୍କ ସ୍ୱ ୩୧୬ସ୍ଥ ଋଷଭ ଦି ୧୨୦ନ ଜେଷ୍ଠ ସୁକ୍ଳ ପୁର୍ନମି ସୁକ୍ରବାରେ ବେଳା ବାର ଉତାରେ ତିନି ଘଣ୍ଟା ଠାରେ ଏ ପୋସ୍ତେକ ସଦାଇଏ ସମ୍ପୂର୍ଣ୍ଣ । ଏ ପୋସ୍ତେକ ଲେଖନକାର ନୀଳୀଗଡ଼ ବଡ଼ମ୍ବା କରଣ ଚୈତନ ଦାସ । ଭଗ୍ନ × × × ପରିପାଳୟତେ । ଏ ପୋସ୍ତେକ ଗହଣି ସୁଣ ହେ ସୁଜନେ ବାଣି । 'କୀଲା ବଡ଼ିମ୍ବା ନୀଯିଗଡ଼ର । ଦହଡ଼ ସାଇ ପୂର୍ବରେ ଘର । ନଟବର ପଛିମିରା ନାମ ତାଙ୍କର । ଶ୍ରୀ ଶୁଭମସ୍ତୁ । ଆହେ ସୁଗ୍ୟ ଜନମାନେ ସୁଧ୍ୟ ଅସୁଧ୍ୟ ପୁରାଇ ଗାଇବ ଲେଖନକାରର ଦୋସ ନ ଧରିବ ।"

(୫) ଓଡ଼ିଶା ମିଉଜିଅମରେ ପୋଥି ସଂଗ୍ରହ ମଧ୍ୟରେ ଥିବା ପ୍ରାଚୀନତମ ପୋଥି 'ଅଭିନବ ଗୀତଗୋବିନ୍ଦ'ର ପୁଷ୍ପିକା ଏ ପ୍ରସଙ୍ଗରେ ଦ୍ରଷ୍ଟବ୍ୟ । ଏହାକୁ ମିଳୁଥିବା ଦୀର୍ଘତମ ପୁଷ୍ପିକାମାନଙ୍କ ମଧ୍ୟରେ ସ୍ଥାନ ଦିଆଯାଇପାରେ । ଏଥିରେ ସମୟର ଉଲ୍ଲେଖ ବ୍ୟତୀତ ବିସ୍ତୃତ ରାଜପ୍ରଶସ୍ତି ଲକ୍ଷ୍ୟ କରିବାର କଥା । ପୁଷ୍ପିକା ଶେଷରେ ପୋଥିହରଣ କରିବା ଦୋଷ ସମ୍ବନ୍ଧରେ ଶ୍ଳୋକ ମଧ୍ୟ ଲକ୍ଷ୍ୟ । ଏ ପୋଥିର ପୁଷ୍ପିକା—

"ସକଳ ଦେବାଧିଦେବ ଶ୍ରୀମଜ୍ଜଗନ୍ନାଥ ପ୍ରିୟତନୟ ସତତ ପରିପାଳନ ବିଧ୍ୱସ୍ତ ପ୍ରତ୍ୟୁହ ନିରପାୟ ଶ୍ରୀ ଦୁର୍ଗାପୁତ୍ର ନିରନ୍ତର ନାରାୟଣ ଚରଣ ସରସିଜ ମକରନ୍ଦ ପାନ ଲମ୍ପଟ ଚଞ୍ଚରିକ ଚିତ୍ତଭୃଙ୍ଗ ଶ୍ରୀଧର ପରିଗମ୍ଯସ୍ତତ୍ର ପ୍ରମଦଭର ଭରିତ ମାନସ ଶ୍ରୀ ନୃସିଂହ ଭକ୍ତି ବିଶେଷ ସମାଦି ସାମ୍ରାଜ୍ୟଲକ୍ଷ୍ମୀ ବିଭାବିତ ମହାମହିମ ସନ୍ତତ ବେଦନାନ୍ତ ନିଗମବାସନା ବାସିତ ନିର୍ମଳାନ୍ତଃକରଣ ଗଜପତି ଗୌଡ଼େଶ୍ୱର ପ୍ରବଳ କଳବର୍ଗବଳ ଜଳଧିଜଳମନ୍ଥାଚଳ ନିଜ ଭୂଜବୀର୍ଯ୍ୟୋପାର୍ଜିତ ବିପକ୍ଷରାଜପକ୍ଷୀଶାଳିମେତି ବିରୁଦପଦ ବିରାଜମାନ କଳବର୍ଗେଶ୍ୱର ବୀରବର ବୀରକେଦାର ବନ୍ଦୀକରଣମୋଚନ ସମୟ ସମର୍ପିତ କର୍ନ୍ନାଟ ରାଜ୍ୟ ପ୍ରାଚୀନ ମହାରାଜ ଚକ୍ରସମୁପାର୍ଜିତ ମହାର୍ଘ ପେଣ୍ଡାମନାମ ମଣିପାଟକଟଜନିତ ସନ୍ତୋଷ ପରିଣତ ନବକୋଟୀ କର୍ନ୍ନାଟ ମହୀପତି ନବକୋଟୀ କର୍ନ୍ନାଟାଧୀଶ ସମାସାଦିତ କଟ୍ଟାଭିଶାଳିମେତି ତଦୀୟ ବିଗୁଦପଦ ନବକୋଟୀ କର୍ନ୍ନାଟେଶ୍ୱର ସୂତତ୍ରିଭିନ୍ନ ନିଜ ଦୁର୍ବିନୟାମାତ୍ୟ ଦୁଷ୍ଟଚେଷ୍ଟା ଲୁତାତନ୍ତୁ ସନ୍ତାନ ବିଶକଳନ ପ୍ରଚଣ୍ଡଚଣ୍ଡକର ସୂର୍ଯ୍ୟବଂଶକମଳବିକାଶଭାସ୍କର ପରମମାହେଶ୍ୱର ପରମବୈଷ୍ଣବ ପରମଭଟ୍ଟାରକ ରିପୁରାଜ ତୋଡ଼ରମଲ୍ଲ ବିଷମସମର ନିଃଶଙ୍କ ମହାରାଜାଧୀରାଜ ଶ୍ରୀପୁରୁଷୋତ୍ତମ ଦେବ ଗଜପତେ ରସ୍ୟେବ ବର୍ଦ୍ଧମାନ ବିଜୟରାଜ୍ୟେ ଚତୁସ୍ତ୍ରିଂଶଦଙ୍କେ ବୈଶାଖ ଶୁକ୍ଳ ପ୍ରତିପଦ ଭାନୁବାସରେ ସମାପ୍ତମିଦଂ ପୁସ୍ତକଂ ॥ ଶ୍ରୀ ରାଧାକୃଷ୍ଣ ଚରଣେ ଶରଣଂ ଭବ । ଭୀମସ୍ୟାପି ରଣେଭଙ୍ଗୋ × × × ନବିଦ୍ୟତେ ॥ ଶ୍ରୀମଦ୍ରାମଚନ୍ଦ୍ର ଜଗଦ୍‌ଗୁରୋ ତ୍ରାହିମାଂ । ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଃଖୀ ଭବେନ୍ନରଃ । ମୃତଃ ସ୍ୱର୍ଗଂ ନଗଚ୍ଛେତ ପିତରଂ ନରକଂ ନୟେତ୍ । ଶ୍ରୀଧର ଶର୍ମଣା ଲେଖଦମଦଃ ପୁସ୍ତକଂ । ଲେଖକୋ ନାସ୍ତି ଦୋଷଃ ।"

୧୪୬୭ମସିହାରୁ ରାଜତ୍ୱ ଆରମ୍ଭ କରିଥିବା ଗଜପତି ପୁରୁଷୋତ୍ତମ ଦେବଙ୍କର ୩୪ଅଙ୍କ ବା ୨୭ବର୍ଷ ରାଜତ୍ୱରେ ଏହି ଗ୍ରନ୍ଥ ରଚିତ ହୋଇଥିବା କଥା ଉପରୋକ୍ତ ପୁଷ୍ପିକାରୁ ଜଣାଯାଏ ।

ପୁଷ୍ପିକାର କାଳ ନିର୍ଦ୍ଦେଶ ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଏପରି ବହୁ ଉଦାହରଣ ଦିଆଯାଇପାରେ । ସେଥି ନିମିତ୍ତ ଏହି ପ୍ରବନ୍ଧରେ ଉଦ୍ଧୃତ ସମସ୍ତ ଓଡ଼ିଆ ପୁଷ୍ପିକା ଦ୍ରଷ୍ଟବ୍ୟ । ତୁଳନାମୂଳକ ଭାବେ ଗୋଟିଏ ଦୁଇଟି ବଙ୍ଗଳା ପୁଷ୍ପିକା ଦେଖିଲେ ଯଥେଷ୍ଟ ହେବ ।

"ଇତି ସନ ୧୭୩୯ଶକାବ୍ଦା ସନ ୧୨୨୪ ବାଙ୍ଗଲା ସନ ୧୮୨୭ ଇଂରେଜୀ ସନ ୧୧୬୯ ମଘୀ ତାରିଖ ୧୭ଇ ଜୈ୍ୟଷ୍ଠ ରୋଜ ବୃହଷ୍ପତି ବାର ତିଥି





ଚତୁର୍ଦ୍ଦଶୀ.... ।" (ବିଚିତ୍ର ସାହିତ୍ୟ ପୃ : ୨୧୮)

"ଇତି ସନ ୧୨୦୮ ବାରସ ଓ ଆଟଶାଲ ତାରିଖ ସୋଲଞ୍ଜି ଜ୍ୟେଷ୍ଠ ରୋଜ ବୃହସ୍ପତିବାର ବେଳା ଦୃତୀୟ ପ୍ରହରେର ସମୟ ସମାପ୍ତ ହଇଲ । ଇତି ଶକାବ୍ଦା ୧୭୨୩ ଶତେର ସଓ ତେଇସ ଶକ ଇଙ୍ଗିରାଜୀ ସନ ୧୮୦୧ ଆଠାର ସଓ ଏକ ସାଲ । ଲିଖିତଂଶ୍ରୀ ରାମ ପ୍ରସାଦ ଚୌଧୁରୀ ସାକିନ ଗୁଡ୍ୟାଘର ପରଗଣେ ହାବେଳି । (ବି:ସା:ପୃ: ୨୧୮)

ଓଡ଼ିଶା ମିଉଜିଅମ୍‌ରେ ଥିବା ଅଚ୍ୟୁତ ଦାସଙ୍କ 'ତତ୍ୱବୋଧିନୀ ଗୀତା'ର ଲିପିକାର ବାଇଧର ମଳିକ । ଏଥିରୁ ଜଣାଯାଏ ଯେ ପୋଥି ନକଲ କେବଳ ବ୍ରାହ୍ମଣ ପଣ୍ଡିତ ବା ଉଚ୍ଚବଂଶଙ୍କର ଏକଚାଟିଆ ଅଧିକାର ନଥିଲା । ଏହି ପୋଥିର ପୁଷ୍ପିକାଟି ବେଶ୍ କୌତୁକପ୍ରଦ । ମଳିକ ପୁଅ ଜଣାଶୁଣା କୌଣସି ଠାକୁର ଠାକୁରାଣୀଙ୍କୁ ବାଦ୍ ନ ଦେଇ ସମସ୍ତଙ୍କର 'ଶ୍ରୀଚରଣେ ଶରଣ' ନେଇଛନ୍ତି । ପୁଷ୍ପିକାଟି ଏଠାରେ ଉଦ୍ଧାର କରାଗଲା ।

"ଭିମସ୍ୟାପି × × × । ଭଗ୍ନ ପୃଷ୍ଟକଟି × × × ପ୍ରତି ପାଳୟତେ । ଆହେ ସୁଗ୍ୟଯନ ମାନେ ସୁଧ ଅସୁଧ ଲଗାଇ ଗାଇବ ଲେଖନକାର ଦୋସ ନ ଧରିବ ଯଥା ଆଦୃସ୍ୟ ତଥା ଲେଖିତଂ ଶ୍ରୀଗୁରୁ ରକ୍ଷା କରିବେ ଅର୍ଧର୍ମ ମଛକେସି ବାଇଦରଙ୍କୁ ସଭାବେ ହୀଂନ ଯାତୀ ମୁହାଂ ମୋହୋର ବାକ୍ୟ ସୁଧ ନୋହିଂ ମୋ ଛାର ଅଧମ ପାମର ଅତୀହୀଂ ପାପି ଦୁରାଚାର ନାହିଁ ମୋହୋର ସୁଧଗତି ମୁଁ ମୁଢ଼ ଅତାହିଂ ଅନୀତୀ । କେବଳ ଗୁରୁ ଚରଣରେ । ମନ ମୋ ଥାଇ ନିରନ୍ତରେ । ଶ୍ରୀହରି ଭୃତ୍ୟର ମୁଁ ଦାସ । ନିରନ୍ତେ ପଦ୍ମପାଦେ ଆସ । ଶ୍ରୀ ହରି ପାଦ ପଙ୍କଜରେ । ଚିତ ମୋ ରହୁ ନିରନ୍ତରେ । ସୁଯନେ ଯେହୀଂ ଆଗ୍ୟା କର । ମୁଁ ତୁମ୍ଭ ପାଦରେ ଶରଣ । ହେ ସୁଗ୍ୟଜନ ମାନେ ତ୍ରୀକାଳ ସନ୍ଧ୍ୟାରେ କଲ୍ୟାଣ କରିବ ମୋହର ଦୋଷ ନଧରିବ ସୁକରବାରେ ହରିଜନମ ଦୀନରେ ଯେ ତତ୍ୱବୋଧନୀ ଗୀତା ସମ୍ପୂର୍ଣ୍ଣ ହେଲା । ଶ୍ରୀଶ୍ରୀଶ୍ରୀ ମାଆ ସାରଳାଙ୍କ ଶ୍ରୀଚରଣ ତଳେ ଅଧର୍ମ ବାଇଧର ମଳିକ ସରଣ ମୌଯେ କୋରିଲୋ ପ୍ରଗଣେ ତୀରଣ ତାଲୁକେ ଶ୍ରୀରାମପୁରେ ଜିଲେ କଟକ ଥାନ ତ୍ରିତୋଲ ଜମିଦାର ଶ୍ରୀଶ୍ରୀଶ୍ରୀ ବାବୁ ବଦ୍ୟନାଥ ପଣ୍ଡିତି ବତିସୀ ଅଙ୍କ୩୨ଙ୍କ ସିଙ୍ଘ ଦି୧୫ନ ସନ ୧୩୧୪ ଚଉଦ ସାଲେ ସୁକରବାରେ ପୂର୍ଣ୍ଣମି (?) ବେଳ ଛଅଘଡ଼ି ସମଏ ୬ା ୬ା ୬ା ୬ା

ବାଇଧର ମ୍ଲକୀ...ଶ୍ରୀଶ୍ରୀଶ୍ରୀ ଜଗନ୍ନାଥ ମୋହାପ୍ରଭୁଙ୍କ ଶ୍ରୀଚରଣେ ସରଣ । ଶ୍ରୀଶ୍ରୀଶ୍ରୀ ମାଆ ସାରଳା ଠାକୁରାଣୀଙ୍କ ଶ୍ରୀଚରଣ ସରଣ । ଶ୍ରୀଶ୍ରୀଶ୍ରୀ ବିର୍ଯାଇଙ୍କ ଶ୍ରୀଚରଣରେ ସରଣ । ଶ୍ରୀଶ୍ରୀଶ୍ରୀ ଚାଚକାଇଙ୍କ ଶ୍ରୀ ଚରଣେ ସରଣ । ଶ୍ରୀଶ୍ରୀଶ୍ରୀ ଗ୍ରାମଦେବତାଙ୍କ ଶ୍ରୀଚରଣେ ସରଣ ।"

ଅଧିକ ଆଲୋଚନା ପୂର୍ବରୁ ଏଠାରେ 'ଆଦୃଶ' ବା ଆଦୃସ୍ୟ' ସମ୍ବନ୍ଧରେ ପଦେ କହିବା ଆବଶ୍ୟକ । ଏହା ହେଉଚି 'ଆଦର୍ଶ'ର ରୂପାନ୍ତର ମାତ୍ର । ଯେଉଁ ମୂଳପୋଥିରୁ ନକଲ କରାଯାଏ ତାହାକୁ ଆଦର୍ଶ ବୋଲି କହନ୍ତି । ଅନେକ ସ୍ଥାନରେ ରୀତି ଥିଲା ଯେ ପୋଥି ଜୀର୍ଣ୍ଣାବସ୍ଥା ପ୍ରାପ୍ତହେଲେ ବା ୧୦୦ବର୍ଷରୁ ପୁରୁଣା ହୋଇଗଲେ ତାହା ନକଲ କରି ପ୍ରାଚୀନ ପୋଥିକୁ ସସମ୍ମାନେ ପାଣିରେ ଭସାଇ ଦିଆଯାଉଥିଲା ବା ପୋତି ଦିଆଯାଉଥିଲା । ତାନ୍ତ୍ରିକ ପୋଥିକୁ ପୋତିଦେବା କଥା ବହୁସ୍ଥାନରେ ଶୁଣାଯାଏ । ପ୍ରାଚୀ ଉପତ୍ୟକାରେ ଦେବୀ ମନ୍ଦିର ସଂଲଗ୍ନ ହୋଇ ବହୁ ପୋଥି ଭଣ୍ଡାର ପୋତା ହୋଇଥିବା ଏବେ ମଧ୍ୟ ପ୍ରବାଦରୂପେ ସେ ଅଂଚଳରେ ଚଳୁଥିବା କଥା ମୁଁ ଶୁଣିଚି । ସେ ଯାହାହେଉ ପୋଥି ନକଲକାର ଆଦର୍ଶକୁ ଅକ୍ଷରେ ଅକ୍ଷରେ ଅନୁସରଣ କରିବାକୁ ଚେଷ୍ଟା କରିଥାନ୍ତି । ବିଭିନ୍ନ ପୋଥିରେ 'ଆଦୃଶରେ ଯେପରି ଥିଲା ସେପରି ଲେଖିଲି, ଯଥା ଦୃଷ୍ଟି ଯଥା ଲେଖନ' ଆଦି କହି ଲିପିକାର ନିଜ ମୁଣ୍ଡରୁ ଦୋଷ ଛଡ଼େଇବା ପାଇଁ ଚେଷ୍ଟା କରିଥିବାର ଦେଖାଯାଏ। ଏଇ ନକଲ କ୍ରମରେ କେତେ ପୋଥିରେ ଭାଷା ଭଲ ଓ ମନ୍ଦ ଉଭୟ ଦିଗରେ ପରିବର୍ତ୍ତିତ ହୋଇଛି ତାର ହିସାବ ଠିକ୍ କରିବା କଠିଣ । ସେଥିପାଇଁ ପୋଥି ସମ୍ପାଦକରେ ବିଭିନ୍ନ ପାଠ ସମ୍ବଳିତ ବିଷୟକ୍ରମ ପ୍ରସ୍ତୁତି ଅଧିକ ବୈଜ୍ଞାନିକ ରୂପେ ଗୃହୀତ ହୁଏ ।

କେତେକ ଲିପିକାର ସମସାମୟିକ ଘଟଣାବଳୀ



ପୁଷ୍ପିକା ସଙ୍ଗେ ଲିପିବଦ୍ଧ କରିଛନ୍ତି । ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତିଙ୍କର ପୋଥିସଂଗ୍ରହ ମଧ୍ୟରେ ଥିବା ପ୍ରାଚୀନତମ ସାରଳା ମହାଭାରତ ପୋଥିର ପୁଷ୍ପିକା ଏ ସମ୍ପର୍କରେ ବିଚାର୍ଯ୍ୟ । "ଶ୍ରୀ ମହାଭାରତ ବିରାଟ ପର୍ବ ସଦାଯାଏ ସମ୍ପୂର୍ଣ୍ଣ ଭିମସ୍ୟାପି × × × ନିବିଦତେ । ଭଗ୍ନପୃଷ୍ଠ × × × ପରିପାଳଏତ୍ ॥ ଶ୍ରୀ ॥ ସମସ୍ତ ଦୀବ୍ୟସୀଘ ଦେବ ମହାରାଜାଙ୍କ ୯ ଅଙ୍କ ୭୩ ସ୍ଥ ଯେଷ୍ଟ ଶୁକ୍ଳ ତୃତୀୟା ସୁକ୍ରବାରେ ସଦାଯାଏ ସମ୍ପୂର୍ନ୍ନ ହୋଇଲା ॥

ଏ ସ୍ନରେ ଦୁର୍ଭିକ୍ଷ କାଳ । ଧ୍ନା ଟଙ୍କାରେ ଗୌ ୬ଣି । ଏ ପୋସ୍ତେକ କୋଠାଦେସ ପ୍ରତାପରୁଦ୍ରପୁର ଶାଶ୍ନ ମକଦମ ଭାବଗ୍ରାହୀ ନନ୍ଦଙ୍କର ॥ ଶ୍ରୀ ଓ ଆଖଣ୍ଡଳେଶ୍ୱର ଦେବ ଓ ଚରଣେ ଶରଣ ।"

ବଙ୍ଗଳା ପୋଥିମାନଙ୍କରେ ଅନୁରୂପ ବିବରଣର ଅଭାବ ନାହିଁ । ତୁଳନାପାଇଁ—

" ଗତ ସନ ଦେବତା ଶୁଖା କରିଯାଛେ ଏକ୍ଷନେ ଚାର୍ଲ୍ୟେର (ଚାଉଲେର) ଦର ଚବିଶ ପଁଚିଶ ପାଇ ଆର କୀ ପ୍ରକାର ହୟ ॥

ଇ ବତ୍ସର ଆବାଦ ଅଳ୍ପ ହଇୟାଛେ । ଭଲ ରକମ ହଇଲ ଇକ୍ଷୁ । ପୋସ୍ୟଦ୍ୟ ହଲନାଇଁ । କାପାସ ଟାକାୟ ୩।୦ଚୌଦ ପୁୟା ତାଇ ପାୟ ନାଇ ॥"
(ବିଚିତ୍ର ସାହିତ୍ୟ, ପୃ : ୨୨୪)

ଉପରେ ଉଦ୍ଧୃତ କେତେକ ପୁଷ୍ପିକାରେ ଏପର୍ଯ୍ୟନ୍ତ 'ଭୀମସ୍ୟାପି × × × ଆଦି କେତେକ ଅଂଶ ବାଦ୍ ଦିଆଯାଇଛି । ଏଗୁଡ଼ିକରେ ଲିପିକାର ନିଜ ଭ୍ରମ ପ୍ରମାଦ ପାଇଁ ତ୍ରୁଟି ସ୍ୱୀକାର କରିଛନ୍ତି । ଏଠାରେ ସେହିପରି କେତେକ ବହୁପ୍ରଚଳିତ ପଦ୍ୟର ନମୁନା ଉଦ୍ଧାର କରାଯାଉଛି ।

"ହେ ଶାଧୁଜନମାନେ ଶୁଧ ଅଷୁଧ ପୁରାଣ ଗାଇବ
ଲେଖନକାର ଦୋଷ ନ ଧରିବ ।"
( ଭାଗବତ ୧ମସ୍କନ୍ଧ, ବିଶ୍ୱଭାରତୀ ସଂଗ୍ରହ)
ଭୀମ ସ୍ୟାପି ରଣେ ଭଙ୍ଗୋ ମୁନେରପି ମତୀଭ୍ରମଃ
ଯଦି ସୁଦ୍ଧମସୁଦ୍ଧ ବା ମମ ଦୋଷ ନ ବିଦତେ ।"
(ସାରଳା ମହାଭାରତ, ଶ୍ରୀ ଗୋପୀନାଥ ମହାନ୍ତି ସଂଗ୍ରହ)

ତୁଳନୀୟ—

"ଯଥା ଦୃଷ୍ଟଂ ତଥା ଲିଖିତଂ ଲେଖକୋ ନାସ୍ତି ଦୋଷକଃ
ଭୀମସ୍ୟାପି ରଣେ ଭଙ୍ଗୋ ମୁନିନାଂ ମତିଭ୍ରମଃ ॥"
(ସୋସାଇଟି, ୮।୬୧୦)

"ଯଦୃଶ ପୁସ୍ତକେ ଦୃଷ୍ଟଂ ତାଦୃଶଂ ଲିଖିତଂ ମୟା ।
ଯଦି ଶୁଦ୍ଧ ମଶୁଦ୍ଧଂ ବା ମମ ଦୋଷୋ ନ ଦୀୟତେ ।"
(ପ୍ରଶସ୍ତି ସଂଗ୍ରହ, ୧।୧୭,୧୮,୨୦,୨୨,୯୨,୧୧୧)

"ଲିଖିଲାମ ପୋଥା ଦୋଷ କ୍ଷେମିବେ ଆମାର ।
ମନୀନାଂ ମତିଭ୍ରମ ଆମି କୋନ ଛାର ।"
(ବଙ୍ଗୀୟ ସାହିତ୍ୟ ପରିଷତ୍ ପୋଥି -୭୦)

"ଭୀମ ଯାଦି ଭୁର୍ଦ୍ଦନାନା ରୋନେ ହୟ ଭଙ୍ଗ
ମୁନିଗଣେର ମତିଭ୍ରମ ଆମି କି ପତଙ୍ଗ ।"
(ପରିଷତ୍ ପୋଥି - ୨୮୫)

ଦୋଷକ୍ଷମା କରିବା ପାଇଁ ଲିପିକାରର ନିବେଦନ ସର୍ବତ୍ର ଦେଖିବାକୁ ମିଳେ ।

"ଅଦୃଷ୍ଟ ଦୋଷାତ୍ ସ୍ମୃତି ବିଭ୍ରମାଦ୍ ବା
ଯଦର୍ଥ ହୀନଂ ଲିଖିତଂ ମୟାତ୍ର ।
ତତ୍ ସର୍ବମାର୍ଯୈଃ ପରିଶୋଧନୀୟଂ
କୋପୋ ନ କାର୍ଯ୍ୟଃ ଖଳୁ ଲେଖକାୟ । "
(ପ୍ରଶସ୍ତି ସଂଗ୍ରହ ୨।୫୨୫, ୧୨୬୧)

ଏଇ ଭୁଲ ତ୍ରୁଟି ସମ୍ବନ୍ଧରେ ଲିପିକାର ବହୁ ନଜିର ମଧ୍ୟ ଦେଖାଇଛନ୍ତି । ବିଶ୍ୱଭାରତୀ ଓଡ଼ିଆ ପୋଥି ସଂଗ୍ରହ ମଧ୍ୟରେ ଥିବା 'ଗୁପ୍ତଭାଗବତ'ର ପୁଷ୍ପିକାଟି ଏ ସମ୍ପର୍କରେ ଅତ୍ୟନ୍ତ ଉପାଦେୟ ।

"ଶ୍ଳୋକଃ –ଗନ୍ତୁକର୍ତ୍ତା ମୁନିବ୍ୟାସୋ ଲେଖକୋପି ବିନାୟକ
ତଥାପି ସ୍ଖଳିତଃ ବୁଦ୍ଧି ମନୁଷ୍ୟାଣାଂ ଚକା

ଇତି ଶ୍ରୀ ଗୁପତ ଭାଗବତ ସଂପୂର୍ଣ୍ଣଂ ସ୍ନ ୧୨୫୫ସାଲ କୁମ୍ଭମାସ ଦି ୧୧ନେ ମଙ୍ଗଳବାର ବେଳ ଛ ଘଡ଼ିଠାରେ କୃଷ୍ଣପକ୍ଷ ଚତୁର୍ଥୀଠାରେ ଏ ପୁସ୍ତକ ସଂପୂର୍ଣ୍ଣ । ଲିଖିତଂ ଶ୍ରୀ ଲୋକନାଥ ସାମଲ ସା - କିମିବର ଭଣ୍ଡାର ।"







ତୁଳନୀୟ—

"ଶାସ୍ତ୍ର ଅଧିକାରୀ ଦେବୀ ସରସ୍ୱତୀ ମାତା ।
ତଥାପି ତାହାର ବିଚଳିତ ହୟକଥା ।
ମହାବଳ ହୟ ଦେଖ ହସ୍ତୀ ମହାଶୟ ।
ତଥାପି ତାହାର ପଦ ବିଚଳିତ ହୟ ॥

(କଲିକତା ବିଶ୍ୱବିଦ୍ୟାଳୟ ବଙ୍ଗଳାପୋଥି ବିବରଣ-୩ । ପୃ: ୬୪୪ -୫୨)

ପୋଥି ଲିଖନର କଷ୍ଟ ନିମ୍ନ ଶ୍ଳୋକଟିରେ ପ୍ରକଟିତ—

"ଭଗ୍ନପୃଷ୍ଠ କଟି ଗ୍ରୀବଂ ସ୍ତବ୍ଧଦୃଷ୍ଟି ରଧୋ ମୁଖମ୍
କଷ୍ଟେନ ଲିଖିତଂ ଗ୍ରନ୍ଥ ଯତ୍ନେନ ପ୍ରତିପାଳୟେ ।"

(ସୋସାଇଟି ୮।୬୧୧୪; ପ୍ରଶସ୍ତି ସଂଗ୍ରହ ୧।୧୧୧, ୨।୬୬୬)

ଲୁହା ଲେଖନୀରେ ଟିପ ଦରଜ, ପୋଥିକୁ ଏକାଗ୍ର ଦୃଷ୍ଟିରେ ଚାହିଁ ଚାହିଁ କ୍ଷୀଣଦୃଷ୍ଟି, ବସି ବସି ଅଣ୍ଟା, ପିଠି ବେକ ନଇଁଯାଇଥିବା ବୃଦ୍ଧ ଲିପିକାରଟିର ଏକ ବାସ୍ତବ ଆଲେଖ୍ୟ ଏଇ ଶ୍ଳୋକଟିରେ ଫୁଟିଉଠିଛି । କେତେକ ଓଡ଼ିଆ ପୋଥିରେ ଉପରୋକ୍ତ ଶ୍ଳୋକଟି ଟିକିଏ ପରିବର୍ତ୍ତିତ ଆକାରରେ ଦେଖାଯାଏ । 'ଯତ୍ନେନ ପ୍ରତିପାଳୟ' ସ୍ଥାନରେ ଏଥିରେ 'ପୁତ୍ରବତ୍ ପ୍ରତିପାଳୟ' ବା 'ପ୍ରତିପାଳୟେତ୍' ଦେଖିବାକୁ ମିଳେ । କ୍ରମେ ଏହାର ଅର୍ଥରେ ପରିବର୍ତ୍ତନ ହୋଇ କେତେକ ଲିପିକାରଙ୍କ ଦ୍ୱାରା ଭିନ୍ନ ଭାବରେ ବ୍ୟବହାର କରାଯାଇଥିବାର ଦେଖାଯାଏ । ପୂର୍ବୋଦ୍ଧୃତ ସାରଳା ମହାଭାରତ ପୁଷ୍ପିକାରେ —

"ଭଗ୍ନ ଦୃଷ୍ଟ କଟୀ ଗ୍ରୀବା ତୁଲ୍ୟ ଦୃଷ୍ଟି ଅଧୋମୁଖଃ ।
ଦୁଃଖେନ ଲେଖିତଂ ଗ୍ରନ୍ଥ ପୁତ୍ରବତ୍ତ ପରିପାଳୟେତ୍ ।"

ତତ୍ତ୍ୱବୋଧିନୀ ଗୀତା ପୁଷ୍ପିକାରେ —

"ଭଗ୍ନ ପୃଷ୍ଟକଟି ଗ୍ରୀବା ଅଧୋମୁଖ ତୁଲ୍ୟ ଦୃଷ୍ଟି ।
ଦୁଃଖେଣ ଲେଖନ୍ତେ ଗ୍ରନ୍ଥ ॥
ପୁତ୍ର ପୌତ୍ରୀ ପ୍ରତିପାଳୟତେ ।"

ବିଶ୍ୱଭାରତୀ ସଂଗ୍ରହାଳୟର ଏକ ପୋଥିରେ —

"ଭଗ୍ନ ପୃଷ୍ଠ କଟୀଗ୍ରିବ ତୁଲ୍ୟ ଦୃଷ୍ଟି ଅଧୋମୁଖଂ ।
ଦୁଃଖିତେ ଲେଖିତଂ ଗ୍ରନ୍ଥ ପୁତ୍ର ପରିପାଳୟତେ ।"

ଏଗୁଡ଼ିକ ଏଠାରେ ଉଦ୍ଧାର କରିବାର କାରଣ ହେଉଛି ଯେ ଯତ୍ନ ସହକାରେ (ପୁତ୍ରବତ୍) ପରିପାଳନୀୟ ସ୍ଥାନରେ ପୁତ୍ରପୌତ୍ରାଦିକ୍ରମେ ସଯତ୍ନେ ରକ୍ଷା କରିବା ଅର୍ଥ ଗ୍ରହଣ କରାଯାଇଅଛି । ପୋଥିର ରକ୍ଷଣାବେକ୍ଷଣ ସମ୍ବନ୍ଧରେ କେତେକ ପୁଷ୍ପିକାରେ ଖୁବ୍ ସୁନ୍ଦର ନିର୍ଦ୍ଦେଶ ଦିଆଯାଇଛି ।

"ଉଦକାନଳ ଚୌରେଭ୍ୟୋ ମୂଷିକେଭ୍ୟ ସ୍ତଥୈବଚ ।
ରକ୍ଷଣୀୟା ପ୍ରଯତ୍ନେନ ଯସ୍ମାତ୍ କଷ୍ଟେନ ଲିଖ୍ୟତେ ।"

(ପ୍ରଶସ୍ତି ସଂଗ୍ରହ – ୧।୧୦୮, ୧୪୨)

"ତୈଳାଦ୍ ରକ୍ଷେ ଜଳାଦ୍ ରକ୍ଷେଦରକ୍ଷେଚ୍ଛିଥିଳ ବନ୍ଧନାତ୍ ।
ମୂର୍ଖହସ୍ତେ ନ ଦାତବ୍ୟମେବଂ ବଦତି ପୁସ୍ତକମ୍ ।"

(ପ୍ରଶସ୍ତି ସଂଗ୍ରହ – ୨।୧୫୪, ୨୦୦, ୬୩୭, ୬୬୬, ୭୪୦)

ପୋଥି ଯେପରି ଚୋରି ନହୁଏ ସେଥିପାଇଁ ସତର୍କତା ଅବଲମ୍ବନ କରିବାକୁ ଲିପିକାର ସାବଧାନ କରାଇ ଦେଇଥିବା ଅନେକତ୍ର ଦେଖାଯାଏ । କେତେକ ସ୍ଥଳରେ ସମ୍ଭାବ୍ୟ ଚୋରକୁ ଉଦ୍ଦେଶ୍ୟ କରି ଅଭିଶାପ ମଧ୍ୟ ବର୍ଷଣ କରାଯାଇଛି । ଏଠାରେ ଦୁଇଟି ଉଦାହରଣ ଦିଆଯାଉଛି । ଶ୍ରୀ ଗୋପୀନାଥ ମହାନ୍ତିଙ୍କର ସଂଗ୍ରହରେ ଥିବା ଗୀତଗୋବିନ୍ଦ (ଧରଣୀଧର ଟୀକା ସହ) ପୋଥିର ପୁଷ୍ପିକା "ଭିମସ୍ୟାପି X X X ନିବିଦତେ । ଭଗ୍ନପୃଷ୍ଟକଟି X X X ପ୍ରତିପାଳଏତ । ପୁସ୍ତକଂ ହରତେ ଯସ୍ତୁକାଣୋ ଦୁଃଖି ଭବେନ୍ନରଃ । ମୃତାଃ ସ୍ୱର୍ଗଂ ନଛନ୍ତି ପିତୃନ୍ନରକଂ ନଯେତ୍ ॥ ବୀରକିଶୋର ଦେବସ୍ୟ ତ୍ରୟୋଦଶାଙ୍କେ କର୍କଟେ ମାସି ଶିତେ ପକ୍ଷେ ପୌର୍ଣ୍ଣମ୍ୟାଂ ଶ୍ରୀ ଗୀତଗୋବିନ୍ଦ ଧରଣୀଧର ସମେତ ମିଦଂ ପୁସ୍ତକଂ ଲିଖିତଂ ଭଗବାନ ମିଶ୍ରେଣଚ । ଶ୍ରୀନୃସିଂହ ରକ୍ଷା କରିଥ ସଦାସର୍ବଦା ଯୁଗ କିଶୋରକୁ ।"

ଦ୍ୱିତୀୟଟି ହେଉଛି ବିଶ୍ୱଭାରତୀ ସଂଗ୍ରହାଳୟର ଭାଗବତ ୧ମ ସ୍କନ୍ଧର ପୁଷ୍ପିକା । "ନମୋ ବ୍ରହ୍ମନ୍ୟ ଦେବାୟ ଗୋବ୍ରାହ୍ମଣ ହିତାୟ ଚଃ । ଯଗଧିତାୟ କୃଷ୍ଣାୟଗୋବିନ୍ଦାୟ ନମୋଃ ନମଃ । ଯେ ପ୍ରଥମ ସ୍କନ୍ଦ ପୁସ୍ତକ ମହା ବୈଶାକ୍ଷ ଦିଂନ ରୋଯ ଗୁରୁବାର ସ୍ମ ତେର ୧୩ଶ ଶ୍ଳ ବେଳ ଦୁଇପ୍ରହର ସମଏ ଶମ୍ପୂର୍ଣ୍ଣ ହୋଇଲେ । ଲେଖନକାର X X X ଚନ୍ଦ୍ର ପ୍ରସାଦ ଦତ ଯାତୀ କାଏସ୍ତ ବୟଶ ବାଉନ । ହେ







ଶାଧୂଯନମାନେ ଶୁଦ୍ଧ ଅଷୁଦ୍ଧ ପୂରାଣ ଗାଈବ ଲେଖନକାର ଦୋଷ ନଧରିବ ଯଥା ଦୃଶ୍ୟ ତଥା ଲେଖୁ କଲା । ଭଗ୍ନପୃଷ୍ଠ X X X ପ୍ରତିପଳଏତ । ଶ୍ରୀ ଶୁଭମସ୍ତୁ । ଲେଖୁକାର ଚନ୍ଦ୍ରପ୍ରସାଦ ଦତ । ସା । ବାରଦା । ପ୍ରା ପାଇଦା । ଈଃ ଥାନେ ଶାଲେପୁର ଆଓଟ ପୋଷ୍ଟ କେଶ ନଗର ଇଲାକା ନୀବାସ । ଏ ପୁସ୍ତକ ବାବୁ ଭାରଥଚନ୍ଦ୍ର ଦତ୍ତ । ଶା । ବାରଦା । ଏ ପୁସ୍ତକ ଯେ ନେବ ଶେ ଧରା ପଡ଼ିବ । ଯେ ବେକ୍ତୀ ପାଠ କରୀବାକୁ ନେଈ ନଦେଈ ଦାବୀ କରିବ ତାହାର ଶପ୍ତ ପୂରସ ନର୍କାଗତି ଲଭୀବ । ଯେଥକୁ ଅଷ୍ଟ ଦିଗପାଳ ଚନ୍ଦ୍ର ସୂର୍ଯ୍ୟ ଶାକ୍ଷ ରହିଲେ ।"

ତୁଳନୀୟ —

ପୁସ୍ତକଂ ହରତେ ଯସ୍ତୁ କାଣୋ ଦୁଃଖୀ ଭବେନ୍ନରଃ ।
ମୃତଃ ସ୍ୱର୍ଗଂ ନଗଛେତ୍ତୁ ପିତରଂ ନରକଂ ନୟେତ୍ ।"
(କଲିକତା ସଂସ୍କୃତ କଲେଜର ପୋଥିବିବରଣ, ୫।୭୬)
ଯତ୍ନେନ ଲିଖିତଂ ଚେଦଂ ଯଷ୍ଟୋରୟତି ପୁସ୍ତକମ୍ ।
ଶୂକରୀ ତସ୍ୟ ମାତା ଚ ପିତା ତସ୍ୟ ଚ ଗର୍ଦଭଃ ॥"

(ସୋସାଇଟି, ପୋଥିସଂଖ୍ୟା, ୫୨୦୪)

"ଏଇ ପୁସ୍ତକ ଯେ ବେକ୍ତି ଚୁରି କରିବେ ସେ ସାସୁରେ ହଇବେକ ଯାର ପୁତ୍ରବଧୂକେ ହରଣ କରିବେ ।"

(ପରଷତ୍ ପୋଥି - ୨୮୫)

"ଦୁଷ୍କେ ଲିଖିତଂ ପୁସ୍ତକଂ ଚୋରେ ନିୟତଂ ଜଦି ମାତାଗାଧଂ ପିତା ସୁକରଂ ଜର୍ମ୍ମେ ଜର୍ମ୍ମେ ।" (ପରିଷତ୍ ପୋଥି - ୨୮୫) ଏଗୁଡ଼ିକ ସଙ୍ଗେ ତୁଳନା କରିବା ପାଇଁ 'Wilson Bulletin for Books' ରେ ପ୍ରକାଶିତ ଓ ଶ୍ରୀ ଚିନ୍ତାହରଣ ଚକ୍ରବର୍ତ୍ତୀଙ୍କ ଦ୍ୱାରା ଉଦ୍ଧୃତ Book Rhyme ଟି ଏଠାରେ ଦିଆଗଲା —

"Steal not this book, my honest friend
For fear the gallows should be your end.
And when you die the lord will say
And where's that book you stole away ?
Look ye, my friend,
If this book I lend,
Be sure to return,
Or in hell you will burn,
Remember, book my cozy shelves
From which my firends help themself,
And like a dove with wings unloosed
Return, come back, fly home to roost."

ଆଲୋଚନା ଶେଷ କରିବା ପୂର୍ବରୁ ଏଠାରେ କେତୋଟି କଥା କହିଦେବା ଆବଶ୍ୟକ । ଏହି ପୁଷ୍ପିକାଗୁଡ଼ିକରେ ଲିପିକାର ଅଜ୍ଞାନତା କିମ୍ବା ଅନବଧାନତା ହେତୁ ଯେଉଁ ବର୍ଣ୍ଣାଶୁଦ୍ଧିଗୁଡ଼ିକ ରହିଚି, ସେଗୁଡ଼ିକୁ ସଂଶୋଧନ କରି ନପଡ଼ିଲେ ବିପଦରେ ପଡ଼ିବାର ସମ୍ଭାବନା । ଅନେକ ସ୍ଥଳରେ ବିରାମ ଚିହ୍ନର ନାମ ପର୍ଯ୍ୟନ୍ତ ନାହିଁ । ଲେଖୁ ଲେଖୁ ହଠାତ୍ କେଉଁଠି ଲିପିକାରଙ୍କର ଚୈତନ୍ୟୋଦୟ ହେଲା ସେଠାରେ ଗୋଟାଏ ଛେଦ ଦିଆଗଲା । 'ଶୁଦ୍ଧ ଓ 'ଅଶୁଦ୍ଧ'କୁ 'ଶୁଧ' ଓ 'ଅଶୁଧ' 'ପୁସ୍ତକ'କୁ 'ପୋସ୍ତକ' ବା 'ପୋସ୍ତେକ', 'ଆଦର୍ଶ'କୁ 'ଆଦୃଶ' ଆଦି ରୂପେ ଲେଖି ଅନେକ ସ୍ଥାନରେ ଲିପିକାର ନିଜ ଭାଷାକୁ ଅଧିକ ସଂସ୍କୃତ କରିବାକୁ ଚେଷ୍ଟା କରିଛନ୍ତି । ତେବେ ଏଗୁଡ଼ିକୁ ଉପହାସ କରିବାର କୌଣସି କାରଣ ନାହିଁ । ଏହା ଚଳିତ ଭାଷାର ପ୍ରଭାବ । ଲିପିକାରଙ୍କର ରସିକତା ମଧ କେତେକ ସ୍ଥାନରେ ବେଶ ଶୋଭନ ରୂପେ ପ୍ରକାଶ ପାଇଛି । 'ରାମରସାମୃତ ସିନ୍ଧୁ'ରେ 'ପାଟହାତୀ ଶତପଥି'କୁ 'ପାଟକରିବର ଶତପଥି' ଲେଖିବାରେ ଏହା ସୁସ୍ପଷ୍ଟ ।

ପୋଥିର ପୁଷ୍ପିକା ଛୋଟ ହେଲେ ମଧ ଯେ ଉପେକ୍ଷଣୀୟ ନୁହେଁ, ଉପରୋକ୍ତ ଆଲୋଚନାରୁ ତାହାର କିଂତ ସୂଚନା ମିଳିବ । ଏଗୁଡ଼ିକୁ ଆହୁରି ବିଭିନ୍ନ ଦିଗରୁ ଆଲୋଚନା କରିବାର ଅବକାଶ ରହିଛି । କିନ୍ତୁ ଏଥିପ୍ରତି ଏପର୍ଯ୍ୟନ୍ତ ଯଥେଷ୍ଟ ଧ୍ୟାନ ଦିଆଯାଇନାହିଁ । କାର୍ଯ୍ୟପ୍ରସଙ୍ଗରେ ଆନୁଷ୍ଠାନିକ ବା ବ୍ୟକ୍ତିଗତ ଯେଉଁସବୁ ସଂଗ୍ରହ ଦେଖିବାର ସୁଯୋଗ ମୁଁ ପାଇଚି, ତହିଁ ମଧ୍ୟରୁ ଅଳ୍ପ କେତେକ ପୁଷ୍ପିକାର ନମୁନା ମାତ୍ର ଏଠାରେ ଦିଆଯାଇଛି । ବିସ୍ତୃତ ଓ ବ୍ୟାପକ ଆଲୋଚନା ପାଇଁ ଏହା ପଥପ୍ରଦର୍ଶକ ହେବ ବୋଲି ମୋର ବିଶ୍ୱାସ ।



✱ ସାହିତ୍ୟ ଦୀକ୍ଷା : ଗ୍ରନ୍ଥ ମନ୍ଦିର (୧୯୮୪)









# ପୋଥିର ଇତିହାସ ଓ ଏହାର ସମ୍ପାଦନା

ଡଃ ସୁବାସ ଚନ୍ଦ୍ର ଦାଶ

ପାଣ୍ଡୁଲିପି ବା ପୋଥି (Manuscript) ହେଉଛି ହାତଲେଖା ଗ୍ରନ୍ଥ । ପ୍ରାଚୀନ କାଳରେ ବର୍ତ୍ତମାନ ପରି ପୁସ୍ତକମୁଦ୍ରଣର କୌଣସି ସୁବିଧା ନଥିଲା । ତେଣୁ ଲେଖକମାନେ ନିଜ ହାତରେ ଲୌହ ଲେଖନୀ ବା ତୂଳୀରେ, କାବ୍ୟ, କବିତା ଓ ଗଦ୍ୟାଦି ଲିପିବଦ୍ଧ କରୁଥିଲେ । ସେତେବେଳେ କାଗଜର ବ୍ୟବହାର ନ ଥିବାରୁ ଲେକକମାନେ ତାଳପତ୍ର ବା ଭୂର୍ଜପତ୍ରରେ ଲେଖୁଥିଲେ । କାଗଜର ବ୍ୟବହାର ବହୁତ ପରେ ଆରମ୍ଭ ହୋଇଥିଲା । କାଗଜର ସର୍ବପ୍ରାଚୀନ ପାଣ୍ଡୁଲିପି ଖ୍ରୀଷ୍ଟୀୟ ତ୍ରୟୋଦଶ ଶତକରେ ଲେଖାଯାଇଥିଲା । କିନ୍ତୁ ତାଳପତ୍ରର ପାଣ୍ଡୁଲିପି ଖ୍ରୀଷ୍ଟୀୟ ଷଷ୍ଠ ଶତକରୁ ଉପଲବ୍ଧ ହୋଇଥାଏ ।

**ଲେଖନୀଶୈଳୀର ଇତିହାସ :**

ତାଳପତ୍ର ବା ଭୂର୍ଜପତ୍ରରେ ପୋଥି ଲେଖିବାରେ ଯଥେଷ୍ଟ ପୂର୍ବରୁ ଲୋକମାନେ ଲେଖିବାର କୌଶଳ ଆବିଷ୍କାର କରିଥିଲେ । ପରମ୍ପରାନୁସାରେ କୁହାଯାଏ ଯେ ଭଗବାନ ବ୍ରହ୍ମା ଅକ୍ଷରଗୁଡ଼ିକୁ ସୃଷ୍ଟି କରି ଲୋକମାନଙ୍କୁ ଦାନ କରିଅଛନ୍ତି । ସେଥିପାଇଁ କୁହାଯାଏ - 'ଧାତ୍ରାକ୍ଷରାଣି ସୃଷ୍ଟାନି ପତ୍ରାରୂଢ଼ାଣ୍ୟେତତ୍ ପୁରା ।' ପ୍ରଥମେ ମନୁଷ୍ୟ ତାର କହିବାକୁ ଥିବା ବିଷୟକୁ ସମତଳ ବାଲିରେ ହାତର ଅଙ୍ଗୁଳି ଦ୍ୱାରା ଲେଖିବାକୁ ଆରମ୍ଭ କଲା । ଲେଖିବାର ଏହା ଖୁବ୍ ସହଜ ମାଧମ ଥିଲା । ତା ଫଳରେ ଧୀରେ ଧୀରେ ପଥର ଉପରେ ଏକ ତୀକ୍ଷ୍ମ ମୁନିଆଁ ନିହାଣରେ ଲେଖିବାର ଶୈଳୀ ଚାରିଆଡ଼େ ବ୍ୟାପିଥିଲା । କାରଣ ବାଲିରେ ଲେଖିଲେ ତାହା ଦୀର୍ଘସ୍ଥାୟୀ ହୋଇ ରହିପାରୁ ନଥିଲା । ତେଣୁ ଲେଖାକୁ ଦୀର୍ଘସ୍ଥାୟୀ ବା ଚିରସ୍ଥାୟୀ କରିବା ପ୍ରୟାସରେ ଭିନ୍ନ ଭିନ୍ନ ଉପାୟ ଉଦ୍ଭାବନ କରାଯାଇଥିଲା । ତନ୍ମଧ୍ୟରୁ ଶିଳାଲେଖ ଅନ୍ୟତମ । କାଠପଟାକୁ ଲେଖନ ଯୋଗ୍ୟ କରାଇ ମୁନିଆଁ କଣ୍ଟା ମାଧ୍ୟମରେ ଖୋଦେଇ କରିବା କୌଶଳ ମଧ ଲୋକମାନେ ଆବିଷ୍କାର କରିଥିଲେ । ଏହାଛଡ଼ା ମାଟିକୁ ଚକଟାଯାଇ ଓ ସମତଳ କରାଯାଇ ତା ଉପରେ ଲେଖି ଭାଟିରେ ପୋଡ଼ି ଦିଆଯାଉଥିଲା । ଏହା ଦୀର୍ଘସ୍ଥାୟୀ ହୋଇ ରହିପାରିଲା । ମାଟିତଳୁ ମିଳୁଥିବା ପୋଡ଼ାମାଟି ଲିଖନ ଫଳକ ଏହାର ନିଦର୍ଶନ ।

ପାଶ୍ଚାତ୍ୟ ବିଦ୍ୱାନ୍ ମ୍ୟାକ୍ସ ମ୍ୟୁଲରଙ୍କ ମତରେ ସଂସ୍କୃତ ବ୍ୟାକରଣ ଶାସ୍ତ୍ରର ପ୍ରମୁଖ ଗ୍ରନ୍ଥ 'ଅଷ୍ଟାଧ୍ୟାୟୀ' ର ରଚୟିତା ପାଣିନିଙ୍କ ପୂର୍ବରୁ ଲୋକମାନେ ଲେଖିବାର ଶୈଳୀ ଜାଣି ନଥିଲେ ।

ଏ.ସି. ବାରନେଲଙ୍କ ମତରେ ଆର୍ଯ୍ୟମାନେ ଫିନିସିୟମାନଙ୍କ ଠାରୁ ଲେଖିବାର ଶୈଳୀ ଶିକ୍ଷା କରିଥିଲେ । ପ୍ରଫେସର ବ୍ୟୁଲରଙ୍କର ମତରେ ଭାରତର ପ୍ରାଚୀନତମ ଲିପି ହେଉଛି ବ୍ରାହ୍ମୀ ଏବଂ ଏହା ସିମେଟିକ୍ ଲିପିରୁ ଜନ୍ମ ନେଇଛି । କିନ୍ତୁ କାଠପଟା, ତାମ୍ରପଟା, ମାଟି ତଳୁ ମିଳୁଥିବା ପୋଡ଼ାମାଟି ଓ ଶିଳାଲେଖ ପ୍ରଭୃତିରୁ ପ୍ରମାଣିତ ହୁଏ ଯେ ଆମ ଦେଶରେ ଲେଖିବାର ଆରମ୍ଭ ବହୁତ ପୂର୍ବରୁ ହୋଇଥିଲା । ଅଶୋକଙ୍କର ଶିଳାଲେଖ ବ୍ରାହ୍ମୀ ଅକ୍ଷରରେ ଉତ୍କୀର୍ଣ୍ଣ । ତାହାହିଁ ପୁରାତନ ଲିପି ଭାବେ ଉପଲବ୍ଧ । ମହେଞ୍ଜୋଦାରୋ ଓ ହରପ୍ପା ସଭ୍ୟତାରୁ ମିଳୁଥିବା ପୋଡ଼ାମାଟିର ଫଳକରେ (Pottery fragments) ଉତ୍କୀର୍ଣ୍ଣ ଲିପି ଏ ପର୍ଯ୍ୟନ୍ତ ଚିହ୍ନଟ ହୋଇ ନଥିବାରୁ ଏହି ଲିପି ବିଷୟରେ ନିର୍ଭୁଲ ଭାବରେ କିଛି କହି ହେଉନାହିଁ ।

ନେପାଳରେ ପିପ୍ରାବା ନାମକ ଏକ ଶିଳାଲେଖ ମିଳେ, ଯାହାର ଲିପି ଅଶୋକଙ୍କର ବ୍ରାହ୍ମୀଲିପି ଠାରୁ କେତେକାଂଶରେ ଭିନ୍ନ । ଏହି ଲିପି ଅଶୋକଙ୍କର ପରବର୍ତ୍ତୀ କାଳରେ ଉପଲବ୍ଧ ହେଉନାହିଁ । ତାହାର ସମୟ ଖ୍ରୀଷ୍ଟପୂର୍ବ







୫ମ ଶତକ ବୋଲି କୁହାଯାଇଛି । ଏଥିରୁ ଅନୁମାନ କରାଯାଇପାରେ ଯେ ଏହା ପୂର୍ବରୁ ମଧ ଲେଖନଶୈଳୀ ଲୋକମାନଙ୍କୁ ଜଣାଥିଲା ।

ବେଦ୍ ଆଚାର୍ଯ୍ୟମାନଙ୍କର ପୁରାତନ ଗ୍ରନ୍ଥ । ସେତେବେଳେ ଲେଖିବା ଉପରେ ଆଦୌ ଗୁରୁତ୍ୱ ଦିଆ ନଯାଇ ଶୁଣି ଶୁଣି ଓ କଣ୍ଠସ୍ଥ କରି ସମ୍ପୂର୍ଣ୍ଣ ବେଦକୁ ମନେ ରଖିବା ଉପରେ ଗୁରୁତ୍ୱ ଦିଆଯାଉଥିଲା । ତେଣୁ ବେଦର ଅନ୍ୟନାମ 'ଶ୍ରୁତି' । ପରମ୍ପରା କ୍ରମେ ଗୁରୁଙ୍କ ଠାରୁ ଶିଷ୍ୟ ବେଦଶିକ୍ଷା ଲାଭ କରି ବୈଦିକ ପରମ୍ପରାକୁ ଜୀବିତ କରି ରଖୁଥିଲେ । ତେଣୁ ଲେଖନ ପ୍ରଣାଳୀ କେବେ ଆରମ୍ଭ ହେଲା କହିବା କଷ୍ଟକର । ସେହିପରି ପାଣ୍ଡୁଲିପି ଲେଖା କେବେ ଆରମ୍ଭ ହେଲା କହିବା କଷ୍ଟକର । ବର୍ତ୍ତମାନ ସୁଦ୍ଧା କେତେକ ବିଦ୍ୱାନ ସମ୍ପୂର୍ଣ୍ଣ ବେଦକୁ ବା ବ୍ୟାକରଣ ଗ୍ରନ୍ଥ 'ଅଷ୍ଟାଧ୍ୟାୟୀ'କୁ କଣ୍ଠସ୍ଥ କରି ରଖିଛନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ବେଦ ଲେଖାଯାଇଥିଲା । ବେଦର କେତେକ ପାଣ୍ଡୁଲିପି ଏବେ ବିଭିନ୍ନ ସ୍ଥାନରେ ଉପଲବ୍ଧ ହେଉଅଛି । ପାଣ୍ଡୁଲିପିଗୁଡ଼ିକର ଅନ୍ୟନାମ ହେଲା ଗ୍ରନ୍ଥ । ଏହାର ବ୍ୟୁତ୍ପତ୍ତି ହେଲା, — 'ଗ୍ରଥ୍ନାତି ଇତି ଗ୍ରନ୍ଥଃ' । ଅର୍ଥାତ୍ ଯାହାକି ଏକାଠି ଗ୍ରଥିତ କରି ବା ଗୁନ୍ଥି କରି ରଖାଯାଏ ତାହା ଗ୍ରନ୍ଥ । ସମଗ୍ର ଦକ୍ଷିଣ ଭାରତରେ ପାଣ୍ଡୁଲିପିକୁ ଗ୍ରନ୍ଥ ବୋଲି କୁହାଯାଏ । ବିଭିନ୍ନ ପାଣ୍ଡୁଲିପିର ପୁଷ୍ପିକାରେ ଅନେକ ସମୟରେ ଦେଖିବାକୁ ମିଳେ, — "ଅସ୍ମିନ୍ ଗ୍ରନ୍ଥେ ଗ୍ରନ୍ଥ ସଂଖ୍ୟା" – ଇତ୍ୟାଦି । ଯେଉଁଠାରେ କି ସମଗ୍ର ପାଣ୍ଡୁଲିପିରେ କେତୋଟି ଗ୍ରନ୍ଥ ଅଛି, ତାହା ଉଲ୍ଲେଖ କରାଯାଇଥାଏ । ଓଡ଼ିଶାରେ ପ୍ରାଚୀନ ପାଣ୍ଡୁଲିପିକୁ 'ପୋଥି' ବୋଲି କୁହାଯାଏ । ସାଧାରଣତଃ ତାଳପତ୍ର ପାଣ୍ଡୁଲିପିକୁ ପରମ୍ପରାନୁକ୍ରମେ ପୋଥି ବୋଲି ଆମେ ବ୍ୟବହାର କରୁ । ଏହା ସମ୍ପୂର୍ଣ୍ଣ ରୂଢ଼ାର୍ଥ । ପୋଥି ଶବ୍ଦର ବ୍ୟୁତ୍ପତ୍ତିକ୍ରମ ହେଉଛି ସଂ.ପୁସ୍ତିକା > ପ୍ରା. ପୁତ୍‌ଥିଆ > ଅପ.ପୁଥିଆ > ପ୍ରା.ଓ. ପୁଥି > ଆଧୁ. ଓ. ପୋଥି । ସାଧାରଣତଃ ଓଡ଼ିଶାରେ ତାଳପତ୍ରକୁ ଲେଖନ ସାମଗ୍ରୀ ଭାବେ ବହୁଳ ଭାବେ ବ୍ୟବହାର କରାଯାଏ । ତେଣୁ 'ପୋଥି' କହିଲେ ଲୋକମାନେ କେବଳ ତାଳପତ୍ର ପାଣ୍ଡୁଲିପିକୁ ହିଁ ବୁଝିଥାନ୍ତି । କିନ୍ତୁ ବାସ୍ତବରେ ଭୂର୍ଜପତ୍ର ବା କାଗଜରେ ଲିଖିତ ପାଣ୍ଡୁଲିପି ମଧ ପୋଥି ଅନ୍ତର୍ଗତ । ପ୍ରାଚୀନ କାଳରେ ପୁସ୍ତକ ଓ ଗ୍ରନ୍ଥ ଶବ୍ଦ ପାଣ୍ଡୁଲିପିକୁ ହିଁ ବୁଝାଉଥିଲା ।

ଦେଶ ବିଦେଶରେ ଭାରତର ବିଭିନ୍ନ ପାଣ୍ଡୁଲିପି ସଂଗ୍ରହାଳୟରେ ବହୁ ପରିମାଣରେ ସଂରକ୍ଷିତ ହୋଇ ରହିଅଛି । ଭାରତରେ ୨୫୦ଟି ସଂଗ୍ରହାଳୟରେ ପ୍ରାୟ ୧୦ ଲକ୍ଷ ପାଣ୍ଡୁଲିପି ରହିଛି ଓ ଜର୍ମାନ୍, ଫ୍ରାନ୍ସ୍, ଗ୍ରେଟ୍‌ବ୍ରିଟେନ୍, ଜାପାନ୍, ଶ୍ରୀଲଙ୍କା ପ୍ରଭୃତି ଦେଶକୁ ପ୍ରାୟ ୨ ଲକ୍ଷ ପୋଥି ସ୍ଥାନାନ୍ତରିତ ହୋଇଯାଇଛି ।

## ଲିପିକାରର ଭୂମିକା :

ପର୍ଯ୍ୟାପ୍ତ ପରିମାଣରେ ଯେଉଁସବୁ ପାଣ୍ଡୁଲିପି ଆବିଷ୍କୃତ ହୋଇଛି, ତାହା କେବଳ ସମ୍ଭବ ହୋଇ ପାରିଛି ଲିପିକାରମାନଙ୍କର ନିଃସ୍ୱାର୍ଥ ସେବା ଯୋଗୁଁ । ସେମାନେ ତାଙ୍କର ଏହି କାର୍ଯ୍ୟକୁ ଅତୀବ ନିଷ୍ଠା ଓ ଧ୍ୟାନ ସହକାରେ କରିଥିଲେ ମଧ ଅନେକ ପାଣ୍ଡୁଲିପିର ପ୍ରତିଲିପିରେ ବହୁ ନୂତନ ଶବ୍ଦ ଯୋଡ଼ି ଦିଆଯାଇଛି ଓ କେତେକ ଶବ୍ଦ ବା ବାକ୍ୟକୁ ଛାଡ଼ି ଦିଆଯାଇଛି । ତେଣୁ କୌଣସି ଏକ ପାଣ୍ଡୁଲିପିର ବିଭିନ୍ନ ପ୍ରତିଲିପିରେ ପାଠାନ୍ତରମାନ ଦେଖାଯାଏ । ଏପରିକି କେତେକ ପାଠାନ୍ତର ମୂଳ ପାଣ୍ଡୁଲିପିଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଯାଇଥାଏ । ଏହା ସମୟେ ସମୟେ ଲିପିକାରମାନଙ୍କର ଅଜ୍ଞାନତାବଶତଃ ହୋଇଥାଏ ବା କେତେକାଂଶରେ ଏହା ସେମାନଙ୍କର ସ୍ୱେଚ୍ଛାକୃତ ପରିବର୍ତ୍ତନ ଯୋଗୁ ହୋଇଥାଏ । ଲିପିକାରମାନଙ୍କ ଦ୍ୱାରା ଏହିପରି ଭାବେ ମୂଳଗ୍ରନ୍ଥର ପ୍ରତିଲିପି ପରିବର୍ତ୍ତିତ ହୋଇ ଯାଇଥିବାରୁ ବିଭିନ୍ନ-ସ୍ଥାନରେ ଗୋଟିଏ ଗ୍ରନ୍ଥର ଅନେକ ପ୍ରତିଲିପି ଉପଲବ୍ଧ ହୋଇଥାଏ ।

ଲିପିକାରମାନେ ପୁଷ୍ପିକାରେ ନିଜ ବିଷୟରେ କିଛି କିଛି ଲେଖୁଥିବାରୁ ପରବର୍ତ୍ତୀକାଳରେ ସମ୍ପାଦକମାନଙ୍କୁ ପାଣ୍ଡୁଲିପି ସମ୍ପାଦନାରେ ତାହା ସହାୟକ ହେଉଥିଲା । କେତେ ସମୟରେ ଏକ ନିର୍ଦ୍ଦିଷ୍ଟ ଜାତିର ଲୋକ ବଂଶ







ପରମ୍ପରାନୁକ୍ରମେ ପ୍ରତିଲିପି ଲେଖିବା କାମ କରି ଆସୁଥିଲେ । ସେମାନଙ୍କୁ କାୟସ୍ଥ ବା କରଣ ବୋଲି କୁହାଯାଉଥିଲା । ଓଡ଼ିଶାରେ ମଧ ଏହିପରି କେତେକ ଲୋକ ପ୍ରତିଲିପି ପ୍ରସ୍ତୁତ କରିବାକୁ ପୁରୁଷାନୁକ୍ରମେ ନିଜର ବ୍ୟବସାୟ ରୂପେ ଗ୍ରହଣ କରି ଆସୁଛନ୍ତି । ସେମାନେ ପୂର୍ବେ ରାଜଦରବାରରେ ନିଯୁକ୍ତି ପାଉଥିଲେ । ସେମାନେ ବ୍ୟବହାର କରୁଥିବା ଅକ୍ଷର ଏକ ବିଶିଷ୍ଟ ଶୈଳୀର ହୋଇଥିବାରୁ ସେହି ଅକ୍ଷରର ନାମ କରଣୀ ଅକ୍ଷର । ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନକୁ ଯାଇ ସେଠାରେ ରହି ପୁସ୍ତକରୁ ପ୍ରତିଲିପି ପ୍ରସ୍ତୁତ କରିଥାନ୍ତି । କେତେକ ସ୍ଥାନରେ ସେମାନେ ଯେଉଁ ପୁସ୍ତକକରୁ ପ୍ରତିଲିପି ପ୍ରସ୍ତୁତ କରିଥାନ୍ତି, ତାହା ବିଷୟରେ କିଛି ସୂଚନା ଉଲ୍ଲେଖ କରିଥାନ୍ତି । ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଯାଇ ସେଠାରେ ରହି ପ୍ରତିଲିପି ପ୍ରସ୍ତୁତ କରିବା ବିଷୟରେ ଲିଖିତ ପ୍ରମାଣ ମିଳୁଅଛି । ଏ ସମସ୍ତ ବିଷୟ ପାଣ୍ଡୁଲିପି ସମ୍ପାଦନରେ ସମ୍ପାଦକଙ୍କୁ ସାହାଯ୍ୟ କରିଥାଏ । ଭିନ୍ନ ଭିନ୍ନ ଲିପିକାରଙ୍କର ଲେଖନଶୈଳୀ ଭିନ୍ନ ହୋଇଥିବାରୁ ସମ୍ପାଦକଙ୍କୁ ସମ୍ପାଦନା କଲାବେଳେ ସେ ସମସ୍ତ ଅକ୍ଷରକୁ ସବିଶେଷ ନିରୀକ୍ଷଣ କରି ଏକ ସିଦ୍ଧାନ୍ତରେ ପହଞ୍ଚିବାକୁ ହୋଇଥାଏ ।

**ପାଣ୍ଡୁଲିପିର ସମ୍ପାଦନା :**

ଲିପିକାରମାନଙ୍କର ନିଃସ୍ୱାର୍ଥ ଚେଷ୍ଟା ଦ୍ୱାରା ଆମେ ଗୋଟିଏ ଗ୍ରନ୍ଥର ପର୍ଯ୍ୟାପ୍ତ ପରିମାଣର ପ୍ରତିଲିପି ପାଇଥାଉ । କିନ୍ତୁ ସେମାନଙ୍କର ଅକ୍ଷରଗତ ଭେଦ ଯୋଗୁଁ କେତେକ ସ୍ଥାନରେ ପାଠଭେଦ ମଧ ଦେଖାଯାଇଥାଏ । ସେହି ପାଠଭେଦ ବର୍ଣ୍ଣାନୁସାରେ, ପଦାନୁସାରେ ବା ବାକ୍ୟାନୁସାରେ ହୋଇଥାଏ । ତେଣୁ ମୂଳ ପାଣ୍ଡୁଲିପିର ପାଠକୁ ଜାଣିବା ପାଇଁ ଏକାଧିକ ପ୍ରତିଲିପି ସଂଗ୍ରହ କରି ସେଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବେ ନିରୀକ୍ଷଣ କରି ଲେଖକ ବା କବିଙ୍କର ମୂଳଲେଖାକୁ ନିର୍ଣ୍ଣୟ କରିବାକୁ ପଡ଼େ । ଏହାକୁ କୁହାଯାଏ ମୂଳ ପାଠ ନିର୍ଣ୍ଣୟ ବା ଶୁଦ୍ଧ ପାଠ ନିର୍ଣ୍ଣୟ ।

ପାଣ୍ଡୁଲିପି ସମ୍ପାଦନା କରିବା ସମୟରେ ସମ୍ପାଦକଙ୍କୁ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ପ୍ରଥମତଃ ଏକାଧିକ ପାଣ୍ଡୁଲିପି ପାଇବା ପାଇଁ ବହୁ ସ୍ଥାନ ଭ୍ରମଣ କରିବାର କଷ୍ଟ ସ୍ୱୀକାର କରିବାକୁ ପଡ଼ିଥାଏ । ଉଦାହରଣ ସ୍ୱରୂପ ଯଦି ସମ୍ପାଦକଙ୍କୁ ଜୟଦେବଙ୍କର 'ଗୀତଗୋବିନ୍ଦ' ସମ୍ପାଦନା କରିବାକୁ ପଡ଼ିବ ତେବେ ତାଙ୍କୁ ଦେଶ ବିଦେଶରେ ଥିବା ସମସ୍ତ ପାଣ୍ଡୁଲିପି ସଂଗ୍ରହ କରିବାକୁ ହେବ ।

'ଗୀତଗୋବିନ୍ଦ'ର ପାଣ୍ଡୁଲପି କେଉଁଠାରେ ଅଛି ତାହା ଜାଣିବା ପାଇଁ "New Catalogus Catalogorum" ର ସାହାଯ୍ୟ ନେବାକୁ ପଡ଼ିଥାଏ । ଅନୁଷ୍ଠାନମାନଙ୍କର ନାମ ଜାଣିପାରିଲେ ସେଠାର Descriptive Catalogue ବା ବର୍ଣ୍ଣନାତ୍ମକ ସୂଚୀରୁ ପାଣ୍ଡୁଲିପି ବିଷୟରେ ଯଥାସମ୍ଭବ ଜ୍ଞାନ ମିଳିପାରେ । ସେହି ଅନୁଷ୍ଠାନକୁ ଅନୁରୋଧ କଲେ ସେମାନେ ତାହାର ଫଟୋ କପି ପଠାଇଥାନ୍ତି । ପାଣ୍ଡୁଲିପିର ଅବସ୍ଥା ଜୀର୍ଣ୍ଣ ବା ଶୋଚନୀୟ ହୋଇଥିଲେ ଅଭ୍ୟସ୍ତ ଲିପିକାରମାନଙ୍କ ଦ୍ୱାରା ତାହାର ଅବିକଳ ନକଲ ଲେଖାଇବାକୁ ପଡ଼ିଥାଏ ।

ପ୍ରତ୍ୟେକ ପାଣ୍ଡୁଲିପିକୁ ଉତ୍ତମ ରୂପେ ନିରୀକ୍ଷଣ କରିବା ଆବଶ୍ୟକ । ମିଳୁଥିବା ପାଣ୍ଡୁଲିପି ପ୍ରତ୍ୟେକ ଅକ୍ଷରକୁଁ ଲେଖି ରଖିବା ଆବଶ୍ୟକ, କାରଣ ଶୁଦ୍ଧ ପାଠ ନିର୍ଣ୍ଣୟ କରିଲାବେଳେ ହୁଏତ ଏହା କୌଣସି ପ୍ରକାରେ ସାହାଯ୍ୟ କରିପାରେ । Collation ଅର୍ଥାତ୍ ପାଣ୍ଡୁଲିପି ମିଳାଇଲାବେଳେ ପଦ୍ୟାତ୍ମକ ଲେଖା ହୋଇଥିଲେ ଗୋଟିଏ ପଦକୁ ଗୋଟିଏ ଏକକ (Unit), ଗଦ୍ୟାତ୍ମକ ଲେଖା ହୋଇଥିଲେ ଗୋଟିଏ ବାକ୍ୟକୁ ଗୋଟିଏ ଏକକ କରିବା ଆବଶ୍ୟକ । ଯଦି କୌଣସି ପାଣ୍ଡୁଲିପିର କୌଣସି ପ୍ରକାରେ ଭିନ୍ନତା ଦେଖାଯାଏ, ତେବେ ତାହାକୁ ଡାହାଣପଟେ ଲେଖିରଖିବା ଉଚିତ୍ । ଅନ୍ୟ କୌଣସି ମତ ବା ଅଧିକାଥିବା ପରିଚ୍ଛେଦ ଡାହାଣପଟ ସ୍ଥାନରେ ଲେଖାଯିବା ଆବଶ୍ୟକ । ଏହିପରି ଭାବେ ସମ୍ପୂର୍ଣ୍ଣ ପାଣ୍ଡୁଲିପିକୁ ମିଳାଇ ନେବା ଉଚିତ ।







ଏହିପରି ମିଳାଇ ସାରିବା ପରେ ସମସ୍ତ ପାଣ୍ଡୁଲିପି ବିଷୟରେ ଓ ପାଣ୍ଡୁଲିପିଗୁଡ଼ିକର ଭିନ୍ନତା ବିଷୟରେ ମଧ୍ୟ ଜାଣିହେବ । ଯଦି କୌଣସି ପାଣ୍ଡୁଲିପିରେ ତାହା ଦେଖାଯାଏ ତେବେ ତାହାର କାରଣ ସହିତ ସେହି ଭିନ୍ନତାକୁ ଦର୍ଶାଇ ଦେବା ଉଚିତ । ଯଦି କୌଣସି ସ୍ଥାନରେ ଦୁଇ ତିନି ପ୍ରକାରର ଭିନ୍ନତା ଦେଖାଯାଏ, ତେବେ କୌଣସି ଏକ ପାଠକୁ ଗ୍ରହଣ କରିବାକୁ ହେବ । ସେହି ପାଠକୁ ଗ୍ରହଣ କରିବାର କାରଣ ମଧ୍ୟ ଦର୍ଶାଯିବା ଉଚିତ୍ ।

ଯେଉଁ ପାଣ୍ଡୁଲିପିର ଯାହା ପାଠ ଆମର ହସ୍ତଗତ ହୁଏ, ତାହା ମୂଳଲେଖା ନିର୍ଦ୍ଧାରଣରେ ସାହାଯ୍ୟ କରେ । ସବୁ ପାଠଗୁଡ଼ିକୁ ଉତ୍ତମ ଭାବେ ବିଭିନ୍ନ ଦୃଷ୍ଟିକୋଣରୁ ପରୀକ୍ଷା କରି କେଉଁଟି ମୂଳ ଲେଖା ଭାବେ ଗ୍ରହଣ କରାଯିବ ସେ ବିଷୟରେ ସିଦ୍ଧାନ୍ତ କରାଯାଏ । ପ୍ରକୃତରେ ଏହି ନିର୍ଣ୍ଣୟ ସମ୍ପାଦକଙ୍କ ପାଖରେ ବଡ଼ କଠିନ ସମସ୍ୟା ରୂପେ ଦେଖାଦେଇଥାଏ । ଯଦି କୌଣସି ପାଣ୍ଡୁଲିପିର ପ୍ରତିଲିପି ଉପଲବ୍ଧ ନୁହେଁ, ତେବେ ସମସ୍ୟା ଅଧିକ ଜଟିଳ ହୋଇଥାଏ । ଏ କ୍ଷେତ୍ରରେ ବିଭିନ୍ନ ଦୃଷ୍ଟିକୋଣରୁ ସତର୍କତା ଅବଲମ୍ବନ କରିବାକୁ ହୁଏ । ଶେଷରେ ଯେଉଁ ପାଠକୁ ସମ୍ପାଦନା କରାଯାଏ, ତାହା ହିଁ ସମ୍ପାଦିତ ଗ୍ରନ୍ଥ ବା ମୂଳ ଲେଖା ବୋଲି ଗ୍ରହଣ କରାଯାଏ । ଏହି ସମ୍ପାଦିତ ଗ୍ରନ୍ଥ ଯେ ସମ୍ପୂର୍ଣ୍ଣ ନିର୍ଭୁଲ, ଏହା କହିବା କଷ୍ଟକର । ତା'ପରେ ମଧ୍ୟ ଅନ୍ୟ କେହି ସମ୍ପାଦକ ଅନ୍ୟ ପ୍ରତିଲିପି ପାଇ ସମ୍ପାଦନା କରିପାରନ୍ତି । ତେଣୁ ଗ୍ରନ୍ଥ ସମ୍ପାଦନା କାର୍ଯ୍ୟ ଅତୀବ କଷ୍ଟକର । ଏହି କାର୍ଯ୍ୟ ସତର୍କତାର ସହିତ ତୁଲାଇବାକୁ ହେବ ।



ସଂସ୍କୃତ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

---

## ସୂଚନା ଓ ଗ୍ରନ୍ଥସୂଚୀ

**ସୂଚନା :**

ଏଠାରେ ଦିଆଯାଇଥିବା ସଂଖ୍ୟା ପୁରୁଣା ବିବରଣୀ ଅନୁସାରେ ଉଦ୍ଧୃତ । କଳେବର ବୃଦ୍ଧିକୁ ଲକ୍ଷ୍ୟରଖି କେତୋଟି ପ୍ରାଚୀନ ସଂଗ୍ରହାଳୟ କେବଳ ନିଆଯାଇଛି ।

**ଦ୍ରଷ୍ଟବ୍ୟ :**

1. New catalogus Catalogorum, Madras University, Madras. 2. An Introduction to Indian Textual criticism by S.M. Katre, Deccan College, Pune, 1954. 3. A History of Indian Literature - M. Winterniz. 4. Prolegomena to the critical Edition of Mahabharata, (Ed.) V.S.
Sukthan Kar, BORI, Pune 1933.







# ବଙ୍ଗଳା ପୋଥିପାଠର ଭୂମିକା

ମୂଳ ବଙ୍ଗଳା ରଚନା : ଡକ୍ଟର ନିର୍ମଳ ଦାସ
ଭାଷାନ୍ତର : ଡକ୍ଟର ଶ୍ରୀଚରଣ ମହାନ୍ତି

## ପୋଥିର ପ୍ରକାର ଭେଦ :

ପୋଥି ଦୁଇ ପ୍ରକାର ହୋଇପାରେ : (୧) କବି ବା ଗ୍ରନ୍ଥକାର ନିଜ ହାତରେ ଲେଖିବା (autograpic text) (୨) ଗ୍ରନ୍ଥକାରଙ୍କ ନିଜହାତଲେଖା ପୋଥିର ପ୍ରତିଲିପି (transmitted text) । ପ୍ରଥମ ଶ୍ରେଣୀର ପୋଥି ଖୁବ୍ ଦୁର୍ଲଭ । ଅନେକ ମନେକରନ୍ତି, ଗଙ୍ଗାରାମ ଦତ୍ତଙ୍କର 'ମହାରାଷ୍ଟ୍ର ପୁରାଣ' କାବ୍ୟର ପୋଥି ଖଣ୍ଡିକ (୧୭୫୧) କବିଙ୍କର ସ୍ୱହସ୍ତଲିଖିତ । (ବାଂଲା ମଙ୍ଗଳ କାବ୍ୟେର ଇତିହାସ ପୃ - ୯୩୯) କିନ୍ତୁ ଏ ବିଷୟରେ ବି ମତଭେଦର ଅବକାଶ ଅଛି । ବଂଲାଦେଶର ଗବେଷକ ଡଃ ମଘହାରୁଲ ଇସ୍‌ଲାମ୍ କବି ହୁଏତ ମାମୁଦଙ୍କର 'ଜଙ୍ଗନାମ' କାବ୍ୟର ସ୍ୱହସ୍ତଲିପି ଆବିଷ୍କାର କରିଛନ୍ତି । (ପାଣ୍ଡୁଲିପି ପାଠ ଓ ପାଠ ସମାଲୋଚନା ପୃ. ୧୫) କିନ୍ତୁ ଏଗସବୁ ସ୍ୱହସ୍ତଲିପି ସଂଖ୍ୟାରେ ଯେପରି ବିରଳ, ସତ୍ୟାସତ୍ୟ ଦୃଷ୍ଟିରୁ ସେପରି ସଂଦେହମୁକ୍ତ ନୁହେଁ । ପ୍ରକୃତପକ୍ଷେ ମଧ୍ୟଯୁଗୀୟ ବଙ୍ଗଳା ସାହିତ୍ୟର ସଂକେତ ହିସାବରେ ଆମେମାନେ ଯେଉଁସବୁ ପୋଥି ପାଉ, ସେଥି ମଧ୍ୟରୁ ଅଧିକାଂଶ ମୂଳପୋଥିର ପ୍ରତିଳିପି । ଏଇସବୁ ପ୍ରତିଲିପିଗୁଡ଼ିକ ଅବଶ୍ୟ କବିଙ୍କର ନିଜ ଲେଖା ପୋଥିରୁ ଦେଖି ନକଲ ହୋଇନାହିଁ । ପ୍ରଥମେ ହୁଏତ କବିଙ୍କର ହସ୍ତଲିଖିତ ପୋଥିର ଏକାଧିକ ପ୍ରତିଲିପି ତିଆରି ହୋଇଥିବ । ତା ପରେ ପୁଣି ସେଇ ସବୁ ପ୍ରତିଲିପିରୁ ନୂଆ ନୂଆ ପ୍ରତିଲିପି ତିଆରି କରାହୋଇଥିବ । ଯେଉଁ ପୋଥିରୁ ପ୍ରଥମେ ପ୍ରତିଲିପି ତିଆରି ହୁଏ ତାକୁ କୁହାଯାଏ ଆଦର୍ଶ ପୋଥି (exemplar) ସେ ସବୁଯୁଗର ଲିଖନକାରମାନେ ପୋଥି ନକଲ କରିବାକୁ ଯାଇ ଅସତର୍କତା, ବିଭ୍ରାନ୍ତି, ଅଜ୍ଞତା ପ୍ରଭୃତି କାରଣରୁ ପ୍ରତିଲିପିରେ ଅନେକ ସମୟରେ ନାନା ରକମର ତ୍ରୁଟିବିଚ୍ୟୁତି ଘଟିଥାଏ । ଫଳରେ ଆଦର୍ଶ ପୋଥି ଓ ଅନୁଲିଖିତ ପୋଥି ମଧ୍ୟରେ ପ୍ରାୟତଃ ନାନା ଅମେଳ ଦେଖାଯାଏ । ପୋଥିରେ ପାଠାନ୍ତରର ସୂତ୍ରପାତ ହିଁ ଏଇଠାରୁ । ଅନୁଲିଖିତ ପୋଥି ଆଦର୍ଶ ପୋଥିଠାରୁ ଯେତେ ଦୂରବର୍ତ୍ତୀ ହୁଏ, ଅନୁଲିଖିତ ପୋଥିରେ ପାଠାନ୍ତରର ସମ୍ଭାବନା ସେତେ ବଢ଼ିଯାଏ । ରୂପରାମ ଚକ୍ରବର୍ତ୍ତୀଙ୍କର 'ଧର୍ମମଙ୍ଗଳ'ର ବିଭିନ୍ନ ପୋଥିର ଦୃଷ୍ଟାନ୍ତ ଦେଇ ବିଷୟଟିକୁ ସ୍ପଷ୍ଟ କରାଯାଇପାରେ । ରବୀନ୍ଦ୍ରଭାରତୀ ବିଶ୍ୱବିଦ୍ୟାଳୟର ବଙ୍ଗଳା ପୋଥିବିଭାଗରେ ରୂପରାମଙ୍କର 'ଧର୍ମମଙ୍ଗଳ'ର 'ଇଛାଇ ଘୋଷ ପାଲା'ର ଗୋଟିଏ ପୋଥି ଅଛି, ପୋଥିର ଲିଖନକାଳ ସନ ୧୦୩୯ ସାଲ ଅର୍ଥାତ୍ ୧୬୩୨ ଖ୍ରୀଷ୍ଟାବ୍ଦ । କାବ୍ୟଟି କବି-ଶକାଙ୍କ ଅନୁସାରେ ୧୫୨୬ ଶକାବ୍ଦ - ୧୬୦୪ ଖ୍ରୀଷ୍ଟାବ୍ଦରେ ରଚିତ, ତା ହେଲେ ରବୀନ୍ଦ୍ର ଭାରତୀର ପୋଥିଟି ମୂଳ କାବ୍ୟ ରଚିତ ହେବାର ୨୮ ବର୍ଷ ପରେ ଅନୁଲିଖିତ । ଏଇ ପାଲାର ଆଉ ଗୋଟିଏ ପୋଥି (ନଂ-୩୬୯୮) କଲିକତା ବିଶ୍ୱବିଦ୍ୟାଳୟ ପୋଥି ବିଭାଗରେ ରଖାଯାଇଛି । ଏଇ ପୋଥିର ଲିଖନକାଳ ସନ ୧୨୨୭ ସାଲ - ୧୮୨୦ ଖ୍ରୀଷ୍ଟାବ୍ଦ, ଅର୍ଥାତ୍ ଏହା ମୂଳକାବ୍ୟ ରଚନା ହେବାର ୨୧୬ ବର୍ଷ ପରେ ଅନୁଲିଖିତ । ର.ଭା. ପୋଥି ସାଙ୍ଗରେ କ.ବି. ପୋଥି ତୁଳନା କଲେ ଅନେକ ଜାଗାରେ ବିଚ୍ୟୁତି ଓ ଭିନ୍ନତା ଲକ୍ଷ୍ୟ କରାଯାଏ । ଏଇସବୁ ବିଚ୍ୟୁତି ଓ ଭିନ୍ନତାରୁ ବୁଝାଯାଏ ଯେ ଦୀର୍ଘ ସମୟର ବ୍ୟବଧାନରେ କ.ବି. ପୋଥି ଆଦର୍ଶ ପୋଥିଠାରୁ ଅନେକ ଦୂର ଘୁଞ୍ଚି ଆସିଛି । ତା ତୁଳନାରେ ର.ଭା. ପୋଥି ଯଦି କବିଙ୍କର ସ୍ୱହସ୍ତଲିପି ନ ହୁଏ ତେବେ ଅନ୍ତତଃ ଆଦର୍ଶଲିପିର ଯେ ଅନେକ ପାଖାପାଖି ସେ ବିଷୟରେ କୌଣସି ସନ୍ଦେହ ନାହିଁ ।

ଅନୂଲିଖିତ ପୋଥି ପ୍ରକୃତି ଅନୁସାରେ ତିନି ପ୍ରକାର, (୧) ସୁରକ୍ଷିତ ପ୍ରତିଲିପି (procted transmission), ଅରକ୍ଷିତ ପ୍ରତିଲିପି (haphazard transmisson), (୩) ସଂଶୋଧିତ



ପ୍ରତିଲିପି (revised transmission) ଯେଉଁ ପୋଥି ଆଦର୍ଶ ପୋଥି ଅବଲମ୍ବନରେ କୌଣସି ସତର୍କ ଲିଖନକାରଙ୍କ ତତ୍ତ୍ୱାବଧାନରେ ଅନୁଲିଖିତ ହୋଇଥାଏ, ତାକୁ କୁହାଯାଏ ସୁରକ୍ଷିତ ପ୍ରତିଲିପି । ସ୍ୱହସ୍ତଲିଖିତ ପୋଥ ପରି ସୁରକ୍ଷିତ ପ୍ରତିଲିପି ହିଁ ଖୁବ୍ ଦୁର୍ଲ୍ଲଭ । ଅଷ୍ଟାଦଶ ଶତକର ଶେଷ ଓ ଊନବିଂଶ ଶତକର ଆରମ୍ଭ ବେଳେ ଇଉରୋପୀୟ ପଣ୍ଡିତମାନେ ଅନେକ ସମୟରେ ଅନେକ ବଙ୍ଗଳା ଓ ସଂସ୍କୃତ ପୋଥିର ପ୍ରତିଲିପି ତିଆରି କରିଥିଲେ । ସେଗୁଡ଼ିକରୁ ଅଧିକାଂଶ ଏବେ ପାଶ୍ଚାତ୍ୟ ପୋଥିଶାଳରେ ସଂରକ୍ଷିତ ହୋଇ ରହିଛି । ଏଇ ଧରଣର ପୋଥି ସଂଗ୍ରହରେ ସୁରକ୍ଷିତ ପ୍ରତିଲିପି ପାଇବା ଅସମ୍ଭବ ନୁହେଁ ।

ଯେଉଁ ପୋଥି ଲିଖିନକାର ସ୍ୱାଧୀନ ପ୍ରଚେଷ୍ଟାରେ ଅନୁଲିଖିତ ହୁଏ ତାକୁ କୁହାଯାଏ ଅରକ୍ଷିତ ପ୍ରତିଲିପି । ଏଇ ଧରଣର ଅନୁଲିଖନରେ ଲିଖନକାର ଉପରେ କୌଣସି ସତର୍କ ବ୍ୟକ୍ତିର ସଜାଗ ତତ୍ତ୍ୱାବଧାନ ନଥିବାରୁ ଲିଖନକାରର ଅଜ୍ଞତା, ବିଭ୍ରାନ୍ତି ବା ଅସତର୍କତା ପାଇଁ ପ୍ରତିଲିପିରେ ଅନେକ ପ୍ରକାର ବିକୃତି ଓ ବିଚ୍ୟୁତି ଦେଖାଦେଇଥାଏ । ଫଳରେ ଆଦର୍ଶ ପୋଥିରୁ ଏହି ପୋଥିର ବ୍ୟବଧାନ ଅନେକ ବଢ଼ିଯାଏ । ବଙ୍ଗଳାରେ ଏହି ଧରଣର ପୋଥିର ସଂଖ୍ୟା ବହୁତ । ଧର୍ମମଙ୍ଗଳର ପୂର୍ବ ଲିଖିତ କ.ବି. ପୋଥି (୩୬୯୮) ଏଇଧରଣର ଅରକ୍ଷିତ ପ୍ରତିଲିପିର ଉଦାହରଣ । ଇଏ ପୋଥି ଆଦର୍ଶ ପୋଥିଠାରୁ ବହୁ ଦୂରବର୍ତ୍ତୀ । ମନେହୁଏ ଲିଖନକାର ଖୁବ୍‌ବେଶି ଶିକ୍ଷିତ ନଥିଲେ । ସେ ବିଚାରବୁଦ୍ଧିରେ ବି ଯଥେଷ୍ଟ ସତର୍କ ନଥିଲେ । ପୁଣି ସେ ଯେଉଁ ପୋଥି ଦେଖି ନକଲ କରିଥିଲେ ସେଥିରୁ ଠିକ୍‌ଭାବେ ପାଠୋଦ୍ଧାର କରିପାରି ନଥିଲେ, ତେଣୁ ଅନେକ ସ୍ଥାନରେ ଭୁଲ୍ ପାଠ ଦେଇଛନ୍ତି । କେତେକ ଜାଗାରେ ଆଦର୍ଶ ପୋଥିର ପଙ୍‌କ୍ତି ବିଶେଷ ଛାଡ଼ି ଯାଇଛନ୍ତି । ଯେପରି ୪/କ ପୃଷ୍ଠାରେ 'ଇଛାଇ ଦେଖିଯା — ଜୋଡ଼ାସିଙ୍ଗା ସାରେ'ର ପରବର୍ତ୍ତୀ ଅପେକ୍ଷିତ ପଙ୍‌କ୍ତିଟି ପୋଥିରେ ନାହିଁ । ଅନୁରୂପ ଭାବରେ ୬/କ ପୃଷ୍ଠାରେ ଏକବାର ପ୍ରଥମରୁ 'ସୋନା' ପାଦଟିର ଉଲ୍ଲେଖ ଦେଖି ବୁଝାପଡ଼େ, ଏହା ଆଗରେ ଦୁଇଟି ପଦ ଥିଲା ଏବଂ 'ସୋନା' ସେଇ ପଦର ଦ୍ୱିତୀୟ ଛତ୍ରର ଶେଷ ପଦ । କିନ୍ତୁ ଛତ୍ର ଦୁଇଟିର ବାକି ଅଂଶ ପୋଥିରୁ ବାଦପଡ଼ିଛି । ଏଠାରେ ଯେପରି ଆଦର୍ଶ ପୋଥିର ପାଠ ବାଦ ପଡ଼ିଛି, ଅନେକ କ୍ଷେତ୍ରରେ ସେପରି ଅନେକ ସ୍ଥାନରେ ପଦ ବଢ଼ାଇ କେତେ ସଂଯୋଜିତ ହୋଇଛି । ଏ ବଢ଼ାଇବାକୁ କୁହାଯାଏ 'ପ୍ରକ୍ଷେପ ବା ପ୍ରକ୍ଷିପ୍ତ ପାଠ (Interpolation)' ।

କୌଣସି କୌଣସି କ୍ଷେତ୍ରରେ ପୋଥିରେ ସଂଶୋଧନର ଚିହ୍ନ ଲକ୍ଷ୍ୟ କରାଯାଏ । ପୋଥି ଅନୁଲିଖିତ ହେବା ପରେ ଲିଖନକାର ନିଜେ କିମ୍ବା ଅନ୍ୟ କୌଣସି ପାଠ୍ୟପରୀକ୍ଷକ ହୁଏତ ଆଦର୍ଶ ପୋଥି ସଙ୍ଗରେ ମିଳାଇ ନଚେତ୍ ନିଜର ବୁଦ୍ଧିବିବେଚନାରୁ ଅନୁଲିଖିତ ପୋଥିର ପାଠ୍ୟକ୍ରମ ଗୁଡ଼ିକ ସଂଶୋଧନ କରିବାର ଦେଖାଯାଏ । ପୋଥିର ପତ୍ରରେ ସଂଶୋଧନୀୟ ଅକ୍ଷର ପଦର ଉପରେ, ତଳେ ବା ପାଖରେ ସଂଶୋଧିତ ପାଠ ଲେଖି ଦିଆଯାଏ । ସଂଶୋଧିତ ପାଠଯୁକ୍ତ ପ୍ରତିଲିପିକୁ କୁହାଯାଏ ସଂଶୋଧିତ ପ୍ରତିଲିପି । ଶ୍ରୀକୃଷ୍ଣକୀର୍ତ୍ତନ ପୋଥିଟି ହିଁ ସଂଶୋଧିତ ପ୍ରତିଲିପି । ସଂଶୋଧିତ ପୋଥିର ସବୁଠାରୁ ଭଲ ଉଦାହରଣ କଲିକତା ବିଶ୍ୱବିଦ୍ୟାଳୟରେ ରହିଥିବା ଚଣ୍ଡୀମଙ୍ଗଳର ୧୦୮୬ ସଂଖ୍ୟାର ପୋଥି (ଲିଖନକାଳ ୧୬୩୮ ଶକାବ୍ଦ — ୧୭୧୭ଖ୍ରୀଷ୍ଟାବ୍ଦ) । 'ପୋଥିଟିରେ ଏପରି ଗୋଟିଏ ବୈଶିଷ୍ଟ୍ୟ ଅଛି ଯାହା ମୁଁ ଅନ୍ୟ କୌଣସି ପୁରୁଣା ପୋଥିରେ ଦେଖିନାହିଁ । କୌଣସି କୌଣସି ପୃଷ୍ଠାର ମାର୍ଜିନ୍‌ରେ ଅନ୍ୟ ପୋଥିରୁ ରୂପାନ୍ତର, ପାଠାନ୍ତର ଏପରିକି ଗୋଟିଏ ଗୋଟିଏ ପଦ ଉଦ୍ଧୃତ ହେବାର ଦେଖାଯାଏ ।' (ଚଣ୍ଡୀମଙ୍ଗଳ — ସୁକୁମାର ସେନ୍ ସମ୍ପାଦିତ, ପୃ.-୪)

## ପୋଥିର ପାଠଭେଦ ଓ ପାଠ ବିକୃତି :

ପାଠଭେଦ ସାଧାରଣତଃ ପୂର୍ବୋକ୍ତ ଅରକ୍ଷିତ ପୋଥିରେ ଦେଖାଯାଏ ଏବଂ ସେଇ ପାଠଭେଦ ଘଟେ ନାନା ଧରଣର ପାଠବିକୃତି ବା ପାଠବିଚ୍ୟୁତିରୁ । ବିଶ୍ଳେଷଣ କରିଲେ ଏଇ ପାଠ ବିକୃତି ମଧ୍ୟରେ ମୋଟାମୋଟି ଚାରୋଟି ଧାରା ଲକ୍ଷ୍ୟ କରାଯାଏ । (କ) ବିପର୍ଯ୍ୟୟ, (ଖ) ବର୍ଜନ, (ଗ) ସଂଯୋଜନ ଏବଂ (ଘ) ମିଶ୍ରଣ ।







**(କ) ବିପର୍ଯ୍ୟ :**

ଲିଖନକାର ଆଦର୍ଶ ପୋଥିର ପାଠ ଯଥାଯଥ ଭାବରେ ଅନୁସରଣ କରିବାକୁ ନ ପାଇଲେ ଅନୁଲିଖିତ ପୋଥିରେ ଆଦର୍ଶ ପାଠର ନାନା ବିପର୍ଯ୍ୟ ଘଟେ । ଏଇ ବିପର୍ଯ୍ୟର ଗୋଟଏ କାରଣ ଲିଖ୍ନକାରର ବିଭ୍ରାନ୍ତି । ଏଇ ବିଭ୍ରାନ୍ତି ଅନେକ ରକମର ହୋଇପାରେ, ଯେପରି —

(୧) ବର୍ଣ୍ଣ ବିଭ୍ରାନ୍ତି : କୌଣସି କୌଣସି ଲିଖନକାର ଆଦର୍ଶ ପୋଥିର ବର୍ଣ୍ଣ ଠିକ୍‌ଭାବରେ ବୁଝି ନପାରିଲେ ଅନେକ ସମୟରେ ମୂଳ ପାଠ୍ୟର ନିର୍ଦ୍ଦିଷ୍ଟ ବର୍ଣ୍ଣଟି ବ୍ୟବହାର ନକରି ସେ ବର୍ଣ୍ଣଟିକୁ ଯେଉଁ ଭାବରେ ପଢ଼ିଥିବ ସେଇପରି ଲେଖି ଦେଇଥାନ୍ତି । ଏଥିରେ ଲିଖନକାରର ବିବେକ ପରିଷ୍କାର ରହିଥିଲେ ବି ପାଠର ବିପର୍ଯ୍ୟାସ ଓ ତଜ୍ଜନିତ ଦୁର୍ବୋଧତା ବେଶ ଦେଖାଦିଏ । ଯେପରି ୩୬୯୮ ନଂ କ.ବି. ପୋଥି (୧୮୨୦) ସାଲରେ ଅନୁଲିଖିତ)ର ୨କ ପୃଷ୍ଠାରେ ଗୋଟିଏ ଜାଗାରେ ଅଛି 'ଇଛେର ସମାନ ଶୁନି ମନୋହର ସ୍ତବ' । ଏଠାରେ 'ଇଛେର' କଥାଟି ଦୁର୍ବୋଧ, କିନ୍ତୁ ଅନ୍ୟ ପୋଥି ସଙ୍ଗରେ ତୁଳନା କଲେ ବୁଝାଯାଏ ଏଠାରେ ପ୍ରକୃତ ପାଠଟି ହେଉଛି 'ଇନ୍ଦ୍ରେର' — 'ଇନ୍ଦ୍ରେର ସମାନ ଶୁନି ମନୋହର ସ୍ତବ' । କଲିକତା ବିଶ୍ୱବିଦ୍ୟାଳୟ ପୋଥିର ଲିଖ୍ନକାର ଆଦର୍ଶ ପୋଥିର 'ନ୍ଦ୍ର' ବର୍ଣ୍ଣଟିକୁ 'ଛ' ମନେ କରି ଅର୍ଥର ସମ୍ଭାବନା ପ୍ରତି ଦୃଷ୍ଟିପାତ ନକରି ନିଜର ପୋଥିରେ 'ଇଛେର' ଲେଖିଥିଲେ ।

**(୨) ଶବ୍ଦ ବିଭ୍ରାନ୍ତି :** ଅନେକ ସମୟରେ ବହୁପରିଚିତ ଶବ୍ଦର ପ୍ରଭାବରେ ଲିଖନକାର ସ୍ୱଳ୍ପପ୍ରଚଳିତ ବା ପ୍ରାୟ ଅପରିଚିତ ଶବ୍ଦର ରୂପ ପରିବର୍ତ୍ତିତ କରନ୍ତି । ଫଳରେ ପାଠ ବିପର୍ଯ୍ୟୟ ଓ ଦୁର୍ବୋଧତା ଦେଖାଦିଏ, ଯେପରି, କ.ବି. ପୋଥି ନଂ ୩୬୯୮ର ୨/ଖ-୩/କ ପୃଷ୍ଠାରେ ଅଛି 'ବିରକାଲୁ ଲଉସେନ ଆଣିଲ ପାଥର' – ପାଥର ଶବ୍ଦଟି ନିଜେ ନିରର୍ଥକ ନହେଲେବି ଏଠାରେ ଅପ୍ରାସଙ୍ଗିକ, ପ୍ରାଚୀନତର ପୋଥିରେ (ରବୀନ୍ଦ୍ର ଭାରତୀ ୧୫) ସଙ୍ଗରେ ତୁଳନାକଲେ ଜଣାଯାଏ ଏଠାରେ ପ୍ରକୃତ ପାଠ ହେବ 'ବିର କାଲୁ ଲାଉସେନ ଆଣିଲ ପାଖର' । (ପାଖର–ଦ୍ରୁତଗାମୀ ଯୁଦ୍ଧଘୋଡ଼ା) । 'ପାଖର' ଶବ୍ଦଟି ୧୭ଶତକରେ ପ୍ରଚଳିତ ଥିଲେ ବି କ.ବି. ପୋଥିର ଲିଖନକାରର ସମସାମିକ କାଳରେ (୧୮୨୦) ଅପ୍ରଚଳିତ ହୋଇପଡ଼ିଥିଲା । ସେଇଠୁଁ ଅର୍ଥର ଯୋଗ୍ୟତା ବିଚାର ନକରି ହିଁ ଲିଖନକାର ମୂଳ 'ପାଖର' ଶବ୍ଦ ସ୍ଥାନରେ ଅପେକ୍ଷାକୃତ ବହୁପ୍ରଚଳିତ 'ପାଥର' ଶବ୍ଦଟି ବସାଇଛନ୍ତି । ଫଳରେ ପାଠ ବିକୃତ ଓ ଅର୍ଥ ବିଭ୍ରାଟ ଦେଖାଯାଇଛି ।

**(୩) ପାଠ ବିଭ୍ରାନ୍ତି :** ଲିଖନକାର ଯଦି ଆଦର୍ଶ ପୋଥିର ଅବିଚ୍ଛିନ୍ନ ଲିପିଧାରା ଠିକ୍ ଭାବରେ ବିଶ୍ଳେଷଣ କରି ନପାରେ, ତେବେ ତା'ର ପାଠଗ୍ରହଣରେ ବିପର୍ଯ୍ୟୟ ଘଟେ ଏବଂ ତା'ର ପୋଥି ଦେଖି ପରବର୍ତ୍ତୀ କାଳରେ ଯେତେ ପୋଥି ଅନୁଲିଖିତ ହେବ ସବୁପୋଥିରେ ସେଇ ପାଠବିଭ୍ରାନ୍ତି ସଂକ୍ରମିତ ହେବ । ଯେପରି ଶ୍ରୀକୃଷ୍ଣକୀର୍ତ୍ତନ ପୋଥିର ୨୧୮ କ ପୃଷ୍ଠାରେ ଅଛି 'ତାର ଦଶନରସନେ କାହ୍ନ ଚାପିଲ ଦଶନେ' — ଏଠାରେ ଅର୍ଥ ଯୋଗ୍ୟତା ବିଚାର କଲେ ବସନ୍ତରଞ୍ଜନ ପାଠ ନେଇଛନ୍ତି 'ଦଶନେର ସନେ' । ଏଇ ପାଠ ସଂଗତ, ସମ୍ଭବତଃ ଆଦର୍ଶ ପୋଥିରେ ଏଇ ପାଠ ହିଁ ଥିଲା, କିନ୍ତୁ ଲିଖନକାର ସମ୍ଭବତଃ ଅବିଚ୍ଛିନ୍ନଭାବରେ ଲେଖା 'ଦସନେରସନେ' ଅଂଶଟି ଠିକ୍ ଭାବରେ ବିଶ୍ଳେଷଣ ନକରିପାରି ଆଦର୍ଶ ପାଠର ଏ' କାର ବାଦ ଦେଇ ନିଜର ପୋଥିରେ ଲେଖିଛନ୍ତି 'ଦସନରସନେ' ।

## ବିପର୍ଯ୍ୟୟର ଅପର କାରଣ ଲିଖନକାରର ଅସତର୍କତା:

କୌଣସି କୌଣସି ଲିଖନକାର ଆଦର୍ଶ ପୋଥିର ଯଥାଯଥ ପାଠୋଦ୍ଧାର କରିପାରିଲେବି ଅନେକ ସମୟରେ ଅସତର୍କ ଅବସ୍ଥାରେ ନିଜର ପୋଥିରେ ଆଦର୍ଶ ପାଠର ବିପର୍ଯ୍ୟୟ ଘଟାଇବସନ୍ତି । ଏଇ ବିପର୍ଯ୍ୟୟ ନାନା ଭାବରେ ଘଟିପାରେ, (୧) ବର୍ଣ୍ଣ, ଶବ୍ଦ ବା ପାଦର ସ୍ଥାନ ବିପର୍ଯ୍ୟୟ ।







ବର୍ଣର ସ୍ଥାନ ବିପର୍ଯ୍ୟୟକୁ କୁହାଯାଏ ବର୍ଣ ବିପର୍ଯ୍ୟୟ (Anagrammatism), ଯେପରି ଶ୍ରୀକୃଷ୍ଣକୀର୍ତ୍ତନ– ପୋଥିର ୧୧୬/କ ପୃଷ୍ଠାର 'ଚେରୁ ଚେରୁ ଫେରୁସ' ଅସଲ ହେବ 'ଚେରୁ ବେଣୁ ସଫେରୁ' । କେବଳ ବର୍ଣନ ନୁହେଁ ଶବ୍ଦର ବି ସ୍ଥାନ ବିପର୍ଯ୍ୟୟ ଘଟେ, ଯେପରି ଶ୍ରୀକୃଷ୍ଣକୀର୍ତ୍ତନ-ପୋଥିର ୨୬/କ ପୃଷ୍ଠାରେ ଅଛି 'ଗିରି କରିଲୌଁ ମୋଥଡ଼ା ଗୋଓ୍ୱାଲୀ' କିନ୍ତୁ ପୂର୍ବବର୍ତ୍ତୀ ପଂକ୍ତିର ଅନ୍ତ୍ୟପଦ 'ଦଡ଼ା'ର ଅସ୍ତିତ୍ୱରୁ ଜଣାପଡ଼େ ଏଠାରେ ଶବ୍ଦର ସ୍ଥାନ ବିପର୍ଯ୍ୟୟ ହୋଇଛି, ଶୁଦ୍ଧ ପାଠରେ ହେବ ଗୋଓ୍ୱାଲୀ ମୋଥଡ଼ା' । ପାଦର ସ୍ଥାନ ବିପର୍ଯ୍ୟୟର ଉଦାହରଣ ପାଇଥାଉ ଧର୍ମମଙ୍ଗଳର ପୋଥି ଦୁଇଟିରେ ।

ପ୍ରାଚୀନତର ପୋଥି (ଗ.ଭା.୧୬,୧୬୩୨)ରେ ଦେଖିବାକୁ ମିଳେ –

ଜୋଡ଼ା ସିଂହାସାରେ କାଲୁ ସଦ୍ଧ ଜାୟ ଦୂର ।
ଚମକ ପଡ଼ିଲ ରାଜ୍ୟ ଅଜୟ ଢେକୁର ॥

ଅର୍ବାଚୀନ ପୋଥିରେ (କ.ବି. ୩୬୯୮, ୧୮୨୦ ଖ୍ରୀ.) ସେଠାରେ ଅଛି

(ଚମକ ପଡ଼ିଲ ରା) ଜ୍ୟ ଅଜୟ ଢେକୁର ।
ଜୋଡ଼ା ସିଙ୍ଗା ସାରେ କାଲୁ ସଦ୍ଧ ଜାୟ ଦୂର ॥

ଏଠାରେ ପ୍ରାଚୀନତର ପୋଥିର ପାଠ ହିଁ ଶୁଦ୍ଧ ମନେହୁଏ । କାରଣ ଜୋଡ଼ା ସିଙ୍ଗାର ଦୂରଗାମୀ ଶବ୍ଦ ହିଁ ଢେକୁର ରାଜ୍ୟ ଚମକିତ ହେଲା, ଅର୍ଥାତ୍ ଆଗେ ସିଙ୍ଗା-ବାଦନ, ତାପରେ ଚମକିତ ହେବା । ସେଇ ଦୃଷ୍ଟିରୁ ପ୍ରାଚୀନତର ପୋଥିର ପାଠ ହିଁ ଯୁକ୍ତିଯୁକ୍ତ । ଅର୍ବାଚୀନ ପୋଥିର ପାଠାନ୍ତର ମୂଳ ପାଦର ଅସତର୍କ ସ୍ଥାନାନ୍ତର ।

ଲିଖନକାରର ଅସତର୍କତାର ଆଉ ଗୋଟିଏ ଫଳ ହେଲା ସମୀକରଣଜାତ ପଦପରିବର୍ତ୍ତନ, ଅର୍ଥାତ୍ ଦୁଇଟି ଭିନ୍ନ ଶବ୍ଦର ଜାଗାରେ ଗୋଟିଏ ଶବ୍ଦର ପୁନରାବୃତ୍ତି । ଏଇ ଧରଣର ଭୁଲ୍ ସାଧାରଣତଃ ପଦର ଶେଷପାଦ କ୍ଷେତ୍ରରେ ଘଟେ । ଯେପରି, ଶ୍ରୀକୃଷ୍ଣକୀର୍ତ୍ତନ ପୋଥିର ୧୨୯ / ଖ ପୃଷ୍ଠାରେ ଯେପରି ଲେଖା ହୋଇଛି —

ସକଳ ଗୋପାଳକୁଳ ଲଆଁ ତଡିଖନେ ।
ନନ୍ଦ ଯଶୋଦା ଧାୟିଆଁ ଆଇଲ ତଡିଖନେ ।

ପରେ ଦ୍ୱିତୀୟ ପଂକ୍ତିର 'ତଡିଖନେ' କାଢ଼ି ଦେଇ ଲିଖନକାର ପାଠପରୀକ୍ଷକ 'ସେଇଖାନେ' କରିଛନ୍ତି ।

ଲିଖନକାର ଯଦି ଶ୍ରୁତିଲେଖକ [amanuenals] (ଶୁଣିଶୁଣି ଲେଖୁଥାଏ) ହୁଅନ୍ତି, ତେବେ ଲିଖନକାରଙ୍କ ପକ୍ଷରେ ଆଉ ଏକ ପ୍ରକାର ଅସତର୍କତା ଦେଖାଯାଏ ଅର୍ଥାତ୍ କେହି ଯଦି ଆଦର୍ଶପୋଥି ପାଠ କରିବାକୁ ଯାଏ ଆଉ ଲିପିକାର ସେଇ ଆଦର୍ଶ ପୋଥିପାଠକର ଉପଭାଷିତ ଉଚ୍ଚାରଣ ଅନୁସାରେ ପଦର ବନାନ ଲେଖିଯାଏ, ତେବେ ଲିଖନକାର ହାତରେ ମୂଳଶବ୍ଦର ରୂପ ପରିବର୍ତ୍ତିତ ହୁଏ । ଯେପରି ଡ଼ଃ ସୁକୁମାର ସେନ ମୁକୁନ୍ଦରାମଙ୍କର 'ଚଣ୍ଡୀମଙ୍ଗଳ' କାବ୍ୟର କ.ବି. ପୋଥି (୧୦୯୮ ନଂ) ପୋଥିର ବନାନ ବୈଶିଷ୍ଟ୍ୟ ଲକ୍ଷ୍ୟ କରି କହନ୍ତି, "ମନେହୁଏ ଯେ ଲେଖକ ପୂର୍ବବଙ୍ଗର ଲୋକ ଥିଲେ, ନଚେତ ସେ ଶ୍ରୁତିଲିଖନ କରିଥିଲେ ଏବଂ ଯିଏ ପଢୁଥିଲେ ସିଏ ପୂର୍ବବଙ୍ଗର ଲୋକ ଥିଲେ । ଯେପରି 'କୁଟି'କୁ କୋଟି, ଶ୍ରୋତି କୁ ଶ୍ରୁତି, ସୁନିତ କୁ ଶୋଣିତ । ଶବ୍ଦରେ ଚନ୍ଦ୍ରବିନ୍ଦୁ ବର୍ଜନ କରିଛନ୍ତି ଏଇ ଅନୁମାନରେ ତାହା ସମର୍ଥିତ ହୁଏ ।" (ଭୂମିକା– ଚଣ୍ଡୀ ମଙ୍ଗଳ, ସାହିତ୍ୟ ଏକାଡ଼େମୀ, ପୃ.-୪) । ଢାକା ବିଶ୍ୱବିଦ୍ୟାଳୟରେ ଥିବା 'ଶ୍ରୀକୃଷ୍ଣବିଜୟ' କାବ୍ୟର ପୋଥି (୧୮୭୬ନଂ) ଖଣ୍ଡିକରେ ଏଇରକମ ଉପଭାଷିକ ବନାନ ବିପର୍ଯ୍ୟୟ ଲକ୍ଷ୍ୟ କରାଯାଏ । ଏଠାରେ ଲିପିକାର ସମ୍ଭବତଃ ଶ୍ରୀହଟ୍ଟନିବାସୀ (ଦ୍ର. ଶ୍ରୀକୃଷ୍ଣ ବିଜୟ : ଖଗେନ୍ଦ୍ରନାଥ ମିତ୍ର ସମ୍ପାଦିତ, ଭୂମିକା)

## (ଖ) ବର୍ଜନ :

କେବେ କେବେ ଆଦର୍ଶ ପୋଥିର ଶବ୍ଦ, ଚରଣ, ସ୍ତବକ ବା ଅଂଶ ବିଶେଷ ଅନୁଲିଖିତ ପୋଥିରେ ବାଦ ପଡ଼ିଯାଏ । ଏଇ ବାଦ ପଡ଼ିବା ପଛରେ କେବେ ଲିଖନକାରର ଅସତର୍କତା, କେବେ ଆଳସ୍ୟ, କେବେ ବା ଦାୟିତ୍ୱହୀନ ମନୋଭାବ କାମ କରେ । ଆଦର୍ଶ ପୋଥିର ଅଂଶବିଶେଷର







ଏଇ ବର୍ଜନକୁ କୁହାଯାଏ ଛାଡ଼ ବା ଲିପିଚ୍ୟୁତି (Lipography) । ଯେପରି, ଶ୍ରୀକୃଷ୍ଣ ବିଜୟର ସମ୍ପାଦକଙ୍କ ଦ୍ୱାରା ନିର୍ବାଚିତ ଆଦର୍ଶ ପୋଥିରେ ଅଛି :

ମୁଖେ ଜଳ ଦିଯା ତା'ରେ ତୁଳେ ସଖିଗଣ
କୋନ କାଳେ କାନ୍ଦ ଉମା କରତ କଥାନ ॥ ୨୯୧୦
ନା କାନ୍ଦ ନା କାନ୍ଦ ଉମା ସ୍ଥିର କର ମତି
କି କରିତେ ପାରେ ଏଥା କାହାର ସକତି ॥ ୨୯୧୧
ନାହି କରେ ରାକାର ନା ସୁନେ ବଚନ
ସଘନେ ନିଶ୍ୱାସ ଛାଡ଼ି କରଏ କ୍ରନ୍ଦନ ।୨୯୧୨

କିନ୍ତୁ ଏକ କାବ୍ୟର କ.ବି. ୫୯୮ ନଂ ପୋଥିରେ ୨୯୧୧ ନଂ ପଦ ଓ ପର ପଦର ପ୍ରଥମ କଡ଼ିଟି ଛାଡ଼ି ଦେଇଛନ୍ତି । ଏଇ ଛାଡ଼ିଯିବାର କାରଣ ସମ୍ଭବତଃ ଲିଖନକାରର ଅନ୍ୟମନସ୍କତା । ୨୯୧୦ ସଂଖ୍ୟକ ପଦରେ ଶେଷ ଶବ୍ଦ 'କଖନ' ଏହା ସଙ୍ଗରେ ୨୯୧୨ ସଂଖ୍ୟକ ପଦର ଶେଷ ଶବ୍ଦ 'କ୍ରନ୍ଦନ'ର ଅନାୟାସରେ ଅନ୍ତ୍ୟାନୁପ୍ରାସ ଘଟାଇ ଲିଖନକାର ମନୋଯୋଗର ଶୈଥିଲ୍ୟ ଭାଙ୍ଗିପଡ଼ିନି ।

ଲିଖନକାରର ଅସତର୍କତା ସବୁଠାରୁ ବେଶି ଲକ୍ଷ୍ୟକରାଯାଏ ସମଶବ୍ଦର ବର୍ଜନ କ୍ଷେତ୍ରରେ । ଯଦି ଏକାଧିକ ପଙ୍‌କ୍ତିର ଆରମ୍ଭରେ ବା ଶେଷରେ ଏକ ଶବ୍ଦ ବା ବାକ୍ୟାଂଶ ଥାଏ ତେବେ କୌଣସି କୌଣସି କ୍ଷେତ୍ରରେ ଲିଖନକାର ଗୋଟିଏ ଶବ୍ଦ ବା ବାକ୍ୟାଂଶ ପ୍ରତ୍ୟାଶିତ ପୂର୍ନଲିଖନ ନକରି ସେଇଟିକୁ ଥରେମାତ୍ର ଲେଖନ୍ତି । ଏଇ ଧରଣର ବର୍ଜନକୁ କୁହାଯାଏ ସମାକ୍ଷରଲୋପ (Haplography) । ଏଇ ସମାକ୍ଷରଲୋପ ପୁଣି ଦୁଇପ୍ରକାର: (୧) ଯଦି ଲୁପ୍ତଶବ୍ଦ ବା ବାକ୍ୟାଂଶ ଆଦର୍ଶପାଠର ପଙ୍‌କ୍ତିର ଆରମ୍ଭରେ ଥାଏ ତେବେ ତାକୁ କୁହାଯାଏ ଆଦି ସମାକ୍ଷରଲୋପ, (୨) ଯଦି ଲୁପ୍ତଶବ୍ଦ ବା ବାକ୍ୟାଂଶ ଆଦର୍ଶପାଠ ପଙ୍‌କ୍ତିର ଶେଷରେ ଥାଏ ତେବେ ତାକୁ କୁହାଯାଏ ଅନ୍ତ୍ୟସମାକ୍ଷରଲୋପ । ଯେପରି ଶ୍ରୀକୃଷ୍ଣ ବିଜୟ କାବ୍ୟର ସମ୍ପାଦକଙ୍କ ଦ୍ୱାରା ଗୃହୀତ ଆଦର୍ଶ ପୋଥିରେ ଅଛି :

ପାଦ୍ୟଅର୍ଘ୍ୟ ଦିଲ ତବେ ଦିବ୍ୟ ସିଂହାସନ ।
ନାନା ଆଭରଣ ଦିଆ କରିଲ ଭୂଷଣ ।୩୧୨୮।
ସମ୍ଭ୍ରମେତ ଗିୟା ରାଜା ଉସାର ମନ୍ଦିରେ ।
ବନ୍ଧି ଦ୍ୱୈତାନ କରି ଆନି ଅନିରୁଦ୍ଧ କିରେ ।୩୧୨୯।
କୃଷ୍ଣେର ସ୍ଥାନେ ଆନି ତାରେ କରିଲ ସନ୍ନିଧାନ
ନାନା ରତ୍ନ ଦିଆ କୈଲ ଉସା କନ୍ୟା ଦାନ ।୩୧୩୦।
ହସ୍ତି ଘୋଡ଼ା ରଥ ଦିଲ ଯୌତୁକ କରିଆ ।
ଦାସଦାସୀ ଗନ ଦିଲ ରତନେ ଭୁସିଆ ।୩୧୩୧।
ପାଦ୍ୟ ଅର୍ଘ୍ୟ ଦିଲ ରାଜା ବସିତେ ଆସନ ।
ନାନା ରତ୍ନେ ଅନିରୁଦ୍ର କରିଲ ଭୂଷଣ ।୩୨୩୨।

କିନ୍ତୁ ଏ କାବ୍ୟର କ.ବି. ୯୫୮ ସଂଖ୍ୟକ ପୋଥିରେ ପୂର୍ବୋଦ୍ଧୃତ ୩୧୨୯-୩୧୩୨ ସଂଖ୍ୟକ ପଦଗୁଡ଼ିକ ନାହିଁ । ତା ଜାଗାରେ ଅଛି:

ପାଦ୍ୟ ଅର୍ଘ୍ୟ ଦିଲ ତବେ ଦିବ୍ୟ ସିଂହାସନ ।
ନାନା ରତ୍ନେ ଅନୁରୁଦ୍ରେ କରିଲ ଭୁସନ ।

କ.ବି. ୯୫୮ ପୋଥରେ ଏଇ ଅଂଶରେ ଆଦି ଓ ଅନ୍ତ ଉଭୟେ ପ୍ରକାର ସମାକ୍ଷର ଲୋପ ଘଟିଛି । ଆଦର୍ଶ ପୋଥିର ୩୧୨୮ ଓ ୩୧ ୩୨ ସଂଖ୍ୟକ ପଦର ଆରମ୍ଭରେ ଯେ 'ପାଦ୍ୟ ଅର୍ଘ୍ୟ ଦିଲ' ବାକ୍ୟାଂଶଟିର ପୁନରାବୃତ୍ତି ହୋଇଛି ୯୫୮ ସଂଖ୍ୟାକ ପୋଥିରେ ତାହା ବର୍ଜିତ ହୋଇ ଥରେ ମାତ୍ର ଅନୁଲିଖିତ ହୋଇଛି । ଅନ୍ୟ ଦିଗରେ ୩୧୨୮ ଓ ୩୧୩୨ ସଂଖ୍ୟକ ପଦର ଶେଷ ଯେଉଁ କରିଲ 'ଭୁସନ' ପୁନରାବୃତି ହୋଇଛି ୯୫୮ ସଂଖ୍ୟକ ପୋଥିରେ ସେଇ ପୁନରାବୃତ୍ତି ବର୍ଜିତ ହୋଇଛି । ଫଳରେ ୯୫୮ ସଂଖ୍ୟକ ପୋଥିରେ ଆଦର୍ଶ ପୋଥିର ୩୧୨୮ ସଂଖ୍ୟକ ପଦର ପ୍ରଥମ ପଂକ୍ତି ଓ ୩୧୩୨ ସଖ୍ୟକ ପଦର ଶେଷ ପଂକ୍ତି ମାତ୍ର ରଖାଯାଇଛି ମଧ୍ୟବର୍ତ୍ତୀ ବାକି ପଙ୍‌କ୍ତି ଗୁଡ଼ିକ ଏକବାରେ ବର୍ଜିତ ହୋଇଛି । ଏଇ ବର୍ଜନ ଇଚ୍ଛାକୃତ ବା ଅନିଚ୍ଛାକୃତ ହୋଇପାରେ ।







## (ଗ) ସଂଯୋଜନ :

ଲିଖନକାରର ଅସତର୍କତା ହେତୁ କୌଣସି ବର୍ଣ, ଶବ୍ଦ, ବାକ୍ୟାଂଶ ବା ଚରଣ ଅନାବଶ୍ୟକ ଭାବରେ ପୁନରାବୃତ ହୋଇଥାଇପାରେ । ଶବ୍ଦ ଓ ବାକ୍ୟାଂଶର ଅସତର୍କ ସଂଯୋଜନାର ଉଦାହରଣ ରହିଛି ଶ୍ରୀକୃଷ୍ଣ କୀର୍ତ୍ତନ ପୋଥିରେ, ୧୮୭ / ଖ ପୃଷ୍ଠାରେ —'ଏବେ ତାକ ବାଂଶୀୟ ଦେହ ବାଂଶୀ ଆନୀ' — ଏଠାରେ ସମ୍ଭବତଃ ଦ୍ୱିତୀୟ 'ବାଂଶୀ' ଅସତର୍କ ଭାବରେ ସଂଯୋଜିତ । ୨୦୫/ଖ ପୃଷ୍ଠାର ଭଣିତାରେ 'ଗାଇଲ ବଡ଼ ଚଣ୍ଡୀଦାସ ଗାଇଲ ବଡ଼ୁ ଚଣ୍ଡୀଦାସ ବାସଲୀବରେ ଲ' — ଏଠାରେ 'ଗାଇଲ.. ଚଣ୍ଡୀଦାସ' ଏହାର ଏକ ଅଂଶ ଲିଖନକାରର ଅସତର୍କତାର ପୁନରାବୃତ୍ତି । ଏଇଧରଣରର ଅସତର୍କ ପୁନରାବୃତ୍ତି ନାମ ଲିପିଦ୍ୱିତ୍ୱ (Dittography) ।

ଲିଖନକାର ଯେ ସବୁ ସମୟରେ ଅସତର୍କ ଭାବରେ ଏକଅଂଶର ଅବିକଳ ପୁନଃଲିଖନ କରେ ତା ନୁହେଁ, କେବେ କେବେ ଆଦର୍ଶପୋଥିର ମୂଳପାଠରେ ନିଜ ଇଚ୍ଛା ଅନୁସାରେ କିଛି ନୂଆ ଅଂଶ ସଂଯୋଜନ ବି କରିଥାଏ । ଅନେକ ସମୟରେ ପୋଥିରେ ଗାୟନ କରିବାର ସୁବିଧା ପାଇଁ ଏପରି ସଂଯୋଜନ କରାଯାଏ । ଏଇ ସଂଯୋଜନ ଅଂଶକୁ କୁହାଯାଏ ପ୍ରକ୍ଷିପ୍ତ ପାଠ । ମୂଳ ପାଠର ବିଷୟବସ୍ତୁକୁ ସ୍ଫୁଟତର କରିବା ପାଇଁ ସାଧାରଣତଃ ପ୍ରକ୍ଷିପ୍ତପାଠ ସଂଯୋଜିତ ହୁଏ । କିନ୍ତୁ ଅନେକ ସମୟରେ ପ୍ରକ୍ଷିପ୍ତ ପାଠ ଅନୁଲିଖିତ ପୋଥିରେ ଅର୍ଥଗତ ଅସଙ୍ଗତି ସୃଷ୍ଟିକରେ ।

## (ଘ) ମିଶ୍ରଣ :

ଅନେକ ସମୟରେ ଲିଖନକାର ଆଗରେ ଏକାଧିକ ପାଠ ସମ୍ବଳିତ ଅନେକଗୁଡ଼ିଏ ଆଦର୍ଶ ପୋଥି ଥିଲେ ସେ ବିଭିନ୍ନ ପୋଥିର ବିଭିନ୍ନ ପାଠ ଇଚ୍ଛାନୁସାରେ ଗ୍ରହଣ-ବର୍ଜନ-ପରିବର୍ତ୍ତନ କରି ଗୋଟିଏ ମିଶ୍ରପାଠ ଗ୍ରହଣ କରେ । ଏଇ ମିଶ୍ରପାଠ ଗ୍ରହଣ କରିବା ପଛରେ କୌଣସି ଯୁକ୍ତି ବା ସଚେତନ ବିଚାରବୁଦ୍ଧି କାମ କରି ନଥାଏ । ପାଠନିର୍ବାଚନର ପଛରେ ତାର ସ୍ୱେଚ୍ଛାଚାର ହିଁ ପ୍ରଧାନ କାରଣ । ସେଥିପାଇଁ ଏଇ ପାଠ ପ୍ରାୟ ବିକୃତ ଏବଂ ମୂଳ ଠାରୁ ଅନେକ ଦୂରବର୍ତ୍ତୀ । ଏଇ ଧରଣର ପାଠକୁ କୁହାଯାଏ ମିଶ୍ରପାଠ (coeflated reading) ।

ଏଇ ମିଶ୍ର ପାଠରୁ ମୂଳପାଠ ନିର୍ଦ୍ଧାରଣ କରିବା ଖୁବ୍ କଠିନ । କୃତ୍ତିବାସ ରାମାୟଣର ବିଭିନ୍ନ ପୋଥି ଏଇରକମ ମିଶ୍ରପାଠର ପ୍ରକୃଷ୍ଟ ଉଦାହରଣ ।

## ପାଠ୍ୟ ସମାଲୋଚନା :

କବିର କବିତ୍ୱଶକ୍ତି ବିଚାରର ସର୍ବପ୍ରଧାନ ଅବଲମ୍ବନ ତାର କାବ୍ୟ । କିନ୍ତୁ ସମାଲୋଚକ ଯଦି କବିର କାବ୍ୟର ବିଶ୍ୱସ୍ତ ଅନୁଲିପି ନ ପାଏ ତେବେ ତା'ର ସମାଲୋଚନା ଯଥାର୍ଥ ହୋଇପାରିବ ନାହିଁ । ଆଜି କାଲି ଛାପାଖାନାର ବ୍ୟାପକ ବ୍ୟବସ୍ଥାରେ କବିଙ୍କର କାବ୍ୟ ଗ୍ରନ୍ଥର ବିଶ୍ୱସ୍ତ ଅନୁଲିପି ପାଇବା କଠିନ ନୁହେଁ, କିନ୍ତୁ ମଧ୍ୟ ଯୁଗର କବିମାନଙ୍କର କାବ୍ୟଗ୍ରନ୍ଥର ବିଶ୍ୱସ୍ତ ଅନୁଲିପି ଅତ୍ୟନ୍ତ ଦୁର୍ଲଭ । ଅଧିକାଂଶ ପୋଥି ହିଁ 'ଅରକ୍ଷିତ', ପାଠବିକୃତି ଫଳରେ ପୋଥିର ପାଠ କବିର ନିଜ ଲେଖାଠାରୁ ଅନେକ ଦୂର ଘୁଞ୍ଚି ଆସିଛି । ଏ କ୍ଷେତ୍ରରେ କବିର କବିତ୍ୱ ନିରୂପଣ କରିବା ଆଗରୁ ଆବଶ୍ୟକ କବିଙ୍କର ନିଜ ପାଠ ଅର୍ଥାତ୍ କବି ନିଜେ ଯାହା ଲେଖିଛନ୍ତି ବା ଲେଖି ପାରନ୍ତି ତାହା ନିରୂପଣ କରିବା । ଏଥିପାଇଁ ନାନା ପ୍ରକାରର ବିଚାରପଦ୍ଧତି ପ୍ରୟୋଗ କରାଯାଏ । ଏଇ ବିଚାରପଦ୍ଧତିକୁ ଇଂରାଜୀରେ କୁହାଯାଏ textual criticism ଅର୍ଥାତ୍ 'ପାଠ-ସମାଲୋଚନା' । ପାଠ ସମାଲୋଚନାର ଉଦ୍ଦେଶ୍ୟ ହେଲା ମୂଳ ପାଠ ବା ତା'ର ପାଖାପାଖି ବିଶୁଦ୍ଧପାଠ ନିର୍ଦ୍ଧାରଣ କରିବା । ଏଇ ଉଦ୍ଦେଶ୍ୟରେ ପାଠ ସମାଲୋଚକ ପ୍ରଧାନତଃ ଦୁଇଟି ପଦ୍ଧତି ଅବଲମ୍ବନ କରନ୍ତି । (କ) ପାଠ ସଂଶୋଧନ (emendation) (ଖ) ପାଠ ପୁନର୍ଗଠନ (recension) ।

**(କ) ପାଠ ସଂଶୋଧନ (emendation) :** ପାଠ ସଂଶୋଧନର ଉଦ୍ଦେଶ୍ୟ ହେଉଛି ପ୍ରାପ୍ତ ପାଠ ସମୂହର ମଧ୍ୟରେ ଯେଉଁସବୁ ବିକୃତିଜନକ ଉପାଦାନ ଅଛି ସେଗୁଡ଼ିକୁ ଦୂର







କରିବା । ଏହି କାର୍ଯ୍ୟପାଇଁ ପାଠ ସମାଲୋଚକ ଏଇ ସବୁ ବ୍ୟବସ୍ଥା ନେଇପାରେ : (୧) ପ୍ରାପ୍ତ ପାଠଗୁଡ଼ିକ ମଧ୍ୟରେ ଅପେକ୍ଷାକୃତ ପ୍ରାଚୀନ ପାଠଗୁଡ଼ିକୁ ଉଦ୍ଧାର କରିବା । ସାଧାରଣତଃ ପୋଥିଗୁଡ଼ିକର ପୁଷ୍ପିକାରେ ବର୍ଣ୍ଣିତ ଲିପିକାଳରୁ ପାଠର ପ୍ରାଚୀନତା ନିର୍ଦ୍ଧାରଣ କରାଯାଏ, ଲିପିକାଳ ନ ପାଇଲେ ପୋଥିର ଅବସ୍ଥା, ଉପକରଣ, ଲିପିର ଛାନ୍ଦ, ଭାଷା ବୈଶିଷ୍ଟ୍ୟ ଇତ୍ୟାଦିରୁ ପାଠର ପ୍ରାଚୀନତା ନିର୍ଦ୍ଧାରଣ କରାଯାଇପାରେ । ତେବେ ପାଠ ପ୍ରାଚୀନ ହେଲେ ହିଁ ଯେ ତା ମୂଳ ବା ବିଶୁଦ୍ଧ ହେବ ଏପରି କୌଣସି କଥା ନାହିଁ । କାର୍ଯ୍ୟତଃ ପାଠବିଚାରର ପ୍ରାଥମିକ ସ୍ତରରେ ବିଶୁଦ୍ଧ ପାଠର ସନ୍ଧାନ ନକରି ବିବିଧ ବିବିଧ ପ୍ରାଚୀନତର ପାଠ ଉଦ୍ଧାର କରିବା ହେବ ପାଠ ସମାଲୋଚନାର କାର୍ଯ୍ୟ ।

(୨) ପ୍ରାଚୀନତର ପାଠଗୁଡ଼ିକ ଉଦ୍ଧାର କରିବାପରେ ସମାଲୋଚକ ଏଇ ସବୁ ପାଠ ମଧ୍ୟରେ ତୁଳନା କରି ତାହା ମଧ୍ୟରୁ ପାରସ୍ପରିକ ଅଭେଦ ଓ ପ୍ରଭେଦର ପ୍ରକାର ଓ ପରିମାଣ ନିରୂପଣ କରିବା ଆବଶ୍ୟକ ।

(୩) ତାହାପରେ ଏଇ ପାଠ ପ୍ରଭେଦର ପୃଷ୍ଠପଟରେ ଲିଖନକାରର ଦାୟିତ୍ୱ କିପରି ଅଛି ତାହା ନିରୂପଣ କରି ଲିଖନକାରର ପ୍ରମାଦଗୁଡ଼ିକ ସଂଶୋଧନ କରିବାକୁ ହେବ । ଏହି କାର୍ଯ୍ୟରେ ପୋଥିର ପୁଷ୍ପିକା ଅର୍ଥାତ୍ ପୋଥିରେ ଯେଉଁ ଅଂଶଟି ଲିଖନକାରର ନିଜସ୍ୱ ରଚନା ସେଇ ଅଂଶ ବିଶେଷଭାବରେ ସାହାଯ୍ୟ କରିପାରେ । ପୁଷ୍ପିକାରୁ ଲେଖନକାରର ସ୍ଥାନ-କାଳ-ପ୍ରବଣତା-ରଚନାଭଙ୍ଗୀ ଇତ୍ୟାଦିର ବୈଶିଷ୍ଟ୍ୟ ସମ୍ପର୍କରେ ଯେଉଁସବୁ ତଥ୍ୟ ମିଳିପାରେ ସେଇସବୁ ତଥ୍ୟ ଦେଇ ପାଠବିକୃତି ଓ ପାଠପ୍ରଭେଦର ସମ୍ଭାବ୍ୟ ପ୍ରକାର ନିର୍ଣ୍ଣୟ କରାଯାଇପାରେ । ଯେପରି ପଂଚଦଶ ଶତକରେ ରଚିତ ଯେ କୌଣସି କାବ୍ୟର ଅଷ୍ଟାଦଶ ଶତକୀୟ ପୋଥିରେ ଯଦି କୌଣସି ପର୍ତ୍ତୁଗୀଜ ବା ଇଂରେଜୀ ଶବ୍ଦ ବ୍ୟବହୃତ ହେବାର ଦେଖାଯାଇଥାଏ, ତେବେ ସ୍ପଷ୍ଟଭାବରେ ଧରିନେବାକୁ ହେବ ସେ ଶବ୍ଦଟି କବିଙ୍କର ବ୍ୟବହୃତ ନୁହେଁ, ପରବର୍ତ୍ତୀ କାଳର ଲିଖନକାରର ବ୍ୟବହୃତ । ସେ କ୍ଷେତ୍ରରେ ପାଠଟି ବର୍ଜନୀୟ । ଏଇ ଭାବରେ ଲିଖନକାରଙ୍କ ଦ୍ୱାରା କରାଯାଇଥିବା ସମ୍ଭାବ୍ୟ ବିକୃତିଗୁଡ଼ିକ ଅନୁମାନ କରିପାରିଲେ ସେଗୁଡ଼ିକ ବର୍ଜନ କରାଯାଇପାରିବ ।

**(ଖ) ପାଠପୁନର୍ଗଠନ :** ପୋଥିରୁ ସମ୍ଭାବ୍ୟ ଲିଖନକାରର ପ୍ରମାଦଗୁଡ଼ିକ ବାଦ ଦେଲେ ଯେଉଁ ସବୁ ପାଠ (presumptive variants) ମିଳିଥାଏ ସେଗୁଡ଼ିକ ଶୁଦ୍ଧତର ହେବାର ସମ୍ଭାବନା ଅନେକ ମାତ୍ରାରେ ଥିଲେ ବି ସେଥିରେ ପାଠ ସମସ୍ୟାର ସମାଧାନ ହୋଇ ପାରେନା । କାରଣ ଏ କ୍ଷେତ୍ରରେ ପାଠର ସଂଖ୍ୟା ଏକାଧିକ ହୋଇପାରେ । ଅଥଚ କବିଙ୍କର ନିଜର ପାଠ ତ ମାତ୍ର ଗୋଟିଏ ଏବଂ ପାଠ ସମାଲୋଚନାର ଲକ୍ଷ୍ୟ ହିଁ ସେହି ଗୋଟିଏ ପାଠକୁ ଉଦ୍ଧାର କରିବା । କାର୍ଯ୍ୟତଃ ପାଠ ସଂଶୋଧନ କରିଲେ ହିଁ ପାଠ ସମାଲୋଚକର କାର୍ଯ୍ୟ ଶେଷ ହୁଏନା, ତାଙ୍କୁ ତାଙ୍କର କର୍ତ୍ତବ୍ୟ ଶେଷ କରିବାକୁ ହେଲେ ଈପ୍ସିତ ପାଠ୍ୟର ସମ୍ଭାବ୍ୟ ପୁର୍ନଗଠନ ହିଁ କରିବାକୁ ହେବ । ଏ କାର୍ଯ୍ୟରେ ସେ ଦୁଇ ଭାବରେ ଅଗ୍ରସର ହୋଇପାରନ୍ତି । (୧) ବାହ୍ୟ ପ୍ରମାଣାଦିର (testimoeium) ସାକ୍ଷ୍ୟ ଗ୍ରହଣ, (୨) ପ୍ରାପ୍ତ ପାଠଗୁଡ଼ିକର ଆଭ୍ୟନ୍ତର ବିଚାର ବିଶ୍ଳେଷଣ ।

ଅନେକ ସମୟରେ ଆଲୋଚ୍ୟମାନ ଗ୍ରନ୍ଥର ରଚନାଂଶ ଭିନ୍ନତର ରଚନା, ଯଥା (କ) କାବ୍ୟ ସଂକଳନ (ଖ) ଅନ୍ୟାନ୍ୟ କବିଙ୍କ ରଚନା (ଗ) ବ୍ୟାକରଣ-ଅଳଂକାର ବା ଶାସ୍ତ୍ରଗ୍ରନ୍ଥର ଦୃଷ୍ଟାନ୍ତ ଉଦ୍ଧାର ହୋଇଥିବା ଅଂଶ । ଏଇସବୁ ଉଦ୍ଧୃତିର ସାଙ୍ଗରେ ମିଳାଇ ଆଲୋଚ୍ୟମାନ ଗ୍ରନ୍ଥର ପାଠ୍ୟ ପୁର୍ନଗଠନ କରାଯାଇପାରେ । ଯେପରି ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀର ବିଭିନ୍ନ ବୈଷ୍ଣବ ପଦ ସଂକଳନରେ ପୂର୍ବବର୍ତ୍ତୀ ଯୁଗର ଅନେକ କବିତାର ପଦ ସଂକଳିତ ହୋଇଛି ଏଇସବୁ କବିଙ୍କର ପଦର ନୂତନ ପୋଥି ପାଇଲେ ଏଇ ସବୁ ସଂକଳନର ପାଠ ସଙ୍ଗରେ ମିଳାଇ ନୂତନ ପୋଥିର ବିକୃତ ପାଠ ସଂଶୋଧନ ଓ ପୁନର୍ଗଠନ କରାଯାଇପାରିବ । ତା ଛଡ଼ା ଆଲୋଚ୍ୟମାନ ଗ୍ରନ୍ଥ ଅନ୍ୟ କୌଣସି ଗ୍ରନ୍ଥର ଅନୁବାଦ ହେଲେ, କିମ୍ବା ଆଲୋଚ୍ୟମାନ ଗ୍ରନ୍ଥର କୌଣସି ଅନୁବାଦ ଥିଲେ, ଯଥାକ୍ରମେ







ମୂଳ ଓ ଅନୁବାଦ ସଙ୍ଗରେ ମିଳାଇ ଆଲୋଚ୍ୟମାନ ପାଠର ପୁନର୍ଗଠନ କରାଯାଇପାରେ । ଯେପରି ଭାଗବତର ଅନୁବାଦ ଶ୍ରୀକୃଷ୍ଣବିଜୟ କାବ୍ୟର ଦୁଇଟି ପୋଥିରେ ୩୨୪ ସଂଖ୍ୟକ ପଦର ଦୁଇଟି ପାଠ ମିଳିଛି :

୧। ଦୈବକୀ ଅଷ୍ଟମ ଗର୍ଭେ କଭୁକନ୍ୟା ନହେ ।
ମାରା ପାତିୟା ସେଇ ଗୋକୁଳେ ଆଛଏ ॥
୨। ଦୈବକୀ ଅଷ୍ଟମ ଗର୍ଭେ କନ୍ୟାକେ ଭୁଲାଏ ।
ମାୟା ପାତିୟା ସେଇ ଗୋକୁଳେ ନିଳୟେ ॥

ମୂଳ ଭାଗବତରେ ଅଛି :

ଦେବକ୍ୟା ଅଷ୍ଟମୋ ଗର୍ଭୋ ନ ସ୍ତ୍ରୀଭବିତୁମର୍ହତି ।୧୦/୮/୮

ମୂଳ ସଙ୍ଗରେ ତୁଳନା କଲେ ବୁଝାଯାଏ ପ୍ରଥମ ପାଠଟି ହିଁ ସଙ୍ଗତ ଏବଂ ସେଇ କାରଣରୁ ବିଶୁଦ୍ଧ ।

ଯେଉଁଠି ବାହ୍ୟ ପ୍ରମାଣାଦିର ଅଭାବ, କିମ୍ବା ବାହ୍ୟ ପ୍ରମାଣାଦିରୁ ସନ୍ତୋଷଜନକ ପାଠ୍ୟପୁର୍ନଗଠନ ସମ୍ଭବ ହୁଏନା ଅଥବା ଯେଉଁଠାରେ ମାତ୍ର ଗୋଟିଏ ପୋଥିର ଅବଲମ୍ବନ ସେଠାରେ ପାଠପୁର୍ନଗଠନ ପାଇଁ ପ୍ରାପ୍ତ ପୋଥିର ଆଲୋଚ୍ୟପାଠର ପ୍ରାସଙ୍ଗିକତା, ଅର୍ଥବୋଧତା ଓ ଭାଷା-ଛନ୍ଦ-ରଚନାଭଙ୍ଗୀର ଅନ୍ତଃସଙ୍ଗତିର ଦିଗକୁ ଦୃଷ୍ଟି ଦେବାକୁ ହୁଏ । ଯେଉଁଠାରେ ପ୍ରାପ୍ତ ପାଠରୁ କୌଣସି ଅର୍ଥବୋଧ ହେଉନଥାଏ ସେଠାରେ ପାଠ ପୁନର୍ଗଠନ ଅପରିହାର୍ଯ୍ୟ ।

ସୁତରାଂ ଦେଖାଯାଉଛି, ଆଭ୍ୟନ୍ତରୀଣ ବିଚାରବିଶ୍ଳେଷଣ ନିମନ୍ତେ ପାଠ୍ୟ ସମାଲୋଚକ ଆଲୋଚ୍ୟ ଯୁଗର ଭାଷା, ଛନ୍ଦ ଓ ସାହିତ୍ୟଭଙ୍ଗୀ ସମ୍ପର୍କରେ ବିଶେଷ ଅବହିତ ରହିବେ, ନଚେତ୍ ଶୁଦ୍ଧ ପାଠକୁ ସେ ଅଶୁଦ୍ଧ ମନେ କରିବାର ଆଶଙ୍କା ଦେଖାଦେଇପାରେ ଅଥବା ଅଶୁଦ୍ଧ ପାଠକୁ ଶୁଦ୍ଧ କରିବାକୁ ଯାଇ ନୂତନତର ଅଶୁଦ୍ଧି ହେବାର ଆଶଙ୍କା ରହିଛି । କାର୍ଯ୍ୟତଃ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟର ସେ ଯୋଗ୍ୟତମ ପାଠକ, ଯିଏ ଏକାଧାରାରେ ନିପୁଣ ପାଠ-ସମାଲୋଚକ ଓ ସହୃଦୟ ରସଗ୍ରାହୀ ।



ପ୍ଲଟ ନଂ ୮୮୬, ଚଣ୍ଡୀମାତା କଲୋନୀ, କେନାଲରୋଡ଼,
ପୋ. ରସୁଲଗଡ଼, ଭୁବନେଶ୍ୱର — ୭୫୧ ୦୧୦
ମୋବାଇଲ୍ – ୯୪୩୭୩ ୫୧୯୪୨

★ ମଧ୍ୟଯୁଗେର କାବ୍ୟପାଠ (ପ୍ରକାଶକ : ସାହିତ୍ୟ ବିହାର, କଲିକତା) ପୁସ୍ତକରୁ ଅନୂଦିତ ।

●





# ପୋଥିର ପାଠ ବିକୃତିର ବିଭିନ୍ନ କାରଣ

ପ୍ରଫେସର ଆଶୁତୋଷ ପଟ୍ଟନାୟକ

## ୧। ସମାନବର୍ଣ୍ଣ ସମ୍ବନ୍ଧୀୟ ବିଭ୍ରାନ୍ତି :

ଓଡ଼ିଆ ଭାଷାରେ ବ୍ୟବହୃତ '୍ୱ' (ବ) ଫଳା, ଏବଂ '୍ୟ' (ଯ) ଫଳା ଦୁଇଟି ଦେଖିବାକୁ ଏକାଭଳି । କେବଳ ବ୍ୟବହାରରେ ଏଗୁଡ଼ିକର ଭିନ୍ନତା ପରିଲକ୍ଷିତ ହୋଇଥାଏ । ଏହି '୍ୱ' (ବ) ଫଳାଟି 'ୱ' ଏବଂ '୍ୟ' (ଯ) ଫଳାଟି 'ୟ' ଭାବେ ଉଚ୍ଚାରିତ ହୋଇଥାଏ । ଫଳା ଦୁଇଟି ବ୍ୟବହାର ସ୍ଥାନ ଭେଦରେ ଭିନ୍ନ ଭିନ୍ନ ଭାବରେ ଉଚ୍ଚାରିତ ହୋଇଥାନ୍ତି । ଯଥା – ବର୍ଣ୍ଣର ଡାହାଣପାର୍ଶ୍ୱରେ ଯୁକ୍ତ ହେଲେ ତାହା 'ୟ' ଭାବେ ଓ ବର୍ଣ୍ଣର ତଳେ ଯୁକ୍ତ ହେଲେ 'ୱ' ଭାବେ ଉଚ୍ଚାରିତ ହୋଇଥାଏ । ଉଦାହରଣ ସ୍ୱରୁପ ବାକ୍ୟ (ୟ) ଓ ବିଲ୍ୱ (ୱ) ଶବ୍ଦ ଦୁଇଟିକୁ ଗ୍ରହଣ କରାଯାଇପାରେ । ମାତ୍ର ଅନେକ ସମୟରେ ଲେଖନକାରମାନେ ତାଳପତ୍ର ନ ଫାଟିବା ପାଇଁ ଓ ନିଜର ଶ୍ରମ ଲାଘବ ନିମନ୍ତେ '୍ୟ' (ୟ) ଫଳାଟିକୁ ଅକ୍ଷର ସହିତ ମିଶାଇ ଲେଖିବା ପାଇଁ ଚେଷ୍ଟା କଲାବେଳେ ତାହା ସମୟେ ସମୟେ ଅକ୍ଷରର ତଳକୁ ଚାଲି ଆସିଥାଏ । ଫଳରେ ତାହା '୍ୱ' (ବ) ଫଳା (ୱ)ର ଭ୍ରମ ସୃଷ୍ଟି କରିଥାଏ । ଯଥା – ଧନ୍ୱା । ଏହି ଶବ୍ଦଟି 'ଧନ୍ୟା' ଉଦ୍ଦେଶ୍ୟରେ ଲିଖିତ ହେଲେ ମଧ ନକଲକାର ତାହାକୁ ବେଳେବେଳେ 'ଧନ୍ୱା' ଭାବେ ଗ୍ରହଣ କରିନେଇଥାଏ । ଫଳରେ ଶବ୍ଦଟି ତ୍ରୁଟିଯୁକ୍ତ ହେବା ସଙ୍ଗେ ସଙ୍ଗେ ପାଠରେ ବିଭ୍ରାନ୍ତି ଆଣିଥାଏ ।

## ୨। ସାଧାରଣ ଅକ୍ଷର ସମ୍ବନ୍ଧୀୟ ବିଭ୍ରାନ୍ତି :

ପୋଥିରେ ଲେଖାଯାଇଥିବା କେତେକ ଅକ୍ଷର ଅନେକ ସମୟରେ ଅନ୍ୟ ଅକ୍ଷର ସହିତ ସାମ୍ୟ ରଖୁଥିବାରୁ ନକଲକାର ସେହି ଅକ୍ଷରଟିକୁ ଭୁଲ କରି ଲେଖି ପକାଇଥାଏ । ଉଦାହରଣ ସ୍ୱରୂପ ପୋଥିରେ ଲେଖାଯାଇଥିବା 'ଉ' ଓ 'ଭ' ଅକ୍ଷର ଦୁଇଟି ଅନେକ ସମୟରେ ଆଖିକୁ ଏକାପରି ଦେଖାଯାଇଥାନ୍ତି । ତେଣୁ ଲିଖନକାର ଏହି ଭ୍ରମରେ 'ଉକ୍ତି' ବା 'ଉକତି'କୁ 'ଭକ୍ତି' ବା 'ଭକତି' ଭାବେ ଲେଖି ଦେଇଥାଏ । ଏହାଛଡ଼ା ଓଡ଼ିଆ ଭାଷାରେ ବ୍ୟବହୃତ ର, ସ, ଖ ପ୍ରଭୃତି ଅକ୍ଷରଗୁଡ଼ିକ ନକଲକାରଙ୍କ ଦ୍ୱାରା ଯଥାକ୍ରମେ ବ, ପ, ଗ ଭାବେ ଗୃହୀତ ହୋଇ ଲିପିବଦ୍ଧ ହୋଇ ଥିବାର ବହୁ ଦୃଷ୍ଟାନ୍ତ ପୋଥି ମଧ୍ୟରେ ଦେଖିବାକୁ ମିଳେ । ଏଠାରେ ଉଦାହରଣ ସ୍ୱରୂପ 'ପ୍ରେମଚିନ୍ତାମଣି' କାବ୍ୟରୁ ଗୋଟିଏ ପଙ୍‌କ୍ତି ଉଦ୍ଧାର କରାଯାଇପାରେ । ଯଥା – ଶ୍ରୋତା ବକ୍ତା ହେଲେ ଆପେ ହେବ ଏକାନ୍ତ ଶ୍ରୋତା ବକ୍ତା ହେଲେ ଆସେ ହେବ ଏକାନ୍ତ (୧।୧।) ଏଠାରେ ଆପେ ଶବ୍ଦଟିର 'ପ' ଅକ୍ଷରଟି ନକଲକାରଙ୍କ ଦ୍ୱାରା 'ସ' ଭାବେ ଗୃହୀତ ହେବାରୁ ଏପରି ବିଭ୍ରାନ୍ତି ଦେଖାଦେଇଛି ।

## ୩। ଶ୍ରବଣ ଓ ଉଚ୍ଚାରଣ ଜନିତ ତ୍ରୁଟି :

ନକଲ କାର୍ଯ୍ୟକୁ କ୍ଷିପ୍ର କରିବା ନିମନ୍ତେ ଅନେକ ସମୟରେ ନକଲକାର ପୋଥି ପଢ଼ି ଡାକିଦେବା ପାଇଁ ଅନ୍ୟ ଏକ ବ୍ୟକ୍ତିର ସହାୟତା ଲୋଡ଼ିଥାନ୍ତି । ପୋଥି ପଢ଼ି ଡାକୁଥିବା ବ୍ୟକ୍ତିର ଉଚ୍ଚାରଣ ଯଦି ଭୁଲ୍ ହୁଏ କିମ୍ବା ନକଲକାରଙ୍କ ପକ୍ଷରେ ତାହା ଅସ୍ପଷ୍ଟ ହୁଏ, ତେବେ ନକଲକାରର ପାଠରେ ପ୍ରମାଦ ସୃଷ୍ଟି ହୋଇଥାଏ । ଉଦାହରଣ ଭାବେ ପ୍ରାଚୀନ ଶବ୍ଦ 'ବଦୟନ୍ତି'କୁ ଗ୍ରହଣ କରାଯାଇପାରେ । ଏହି 'ବଦୟନ୍ତି' ଶବ୍ଦଟିରେ ଉଚ୍ଚାରଣଗତ ଅସ୍ପଷ୍ଟତା ଆସିଲେ ନକଲକାର ତାହାକୁ 'ବଦନ୍ତି' ଲେଖିଥାନ୍ତି । ଫଳରେ ଶବ୍ଦଟିର 'ୟ' ବର୍ଣ୍ଣଟିର ବିଲୋପ ଫଳରେ ତାହାର ପ୍ରାଚୀନତାର ବିଲୁପ୍ତି ଘଟେ । 'ପ୍ରେମଚିନ୍ତାମଣି' ଗ୍ରନ୍ଥରୁ ଏହି ତ୍ରୁଟିର ଆଉ ଗୋଟିଏ ଉଦାହରଣ ନିମ୍ନରେ ଦିଆଯାଇପାରେ । ଯଥା – "ଯେ **ଯୋଗ୍ୟାଯୋଗ୍ୟ କର୍ମାଧାନ ଯେ ଯୋଗ୍ୟ ଯୋଗ୍ୟ କର୍ମଧାନ** (୩।୫୫) ଏଠାରେ 'ଯୋଗ୍ୟାଯୋଗ୍ୟ' ଶବ୍ଦଟି 'ଯୋଗ୍ୟଯୋଗ୍ୟ' ଏବଂ 'କର୍ମଧାନ' ଶବ୍ଦଟି 'କର୍ମଧାନ' ଶବ୍ଦରେ ରୂପାନ୍ତରିତ ହୋଇଛି ।







କେବଳ ଡାକୁଥିବା ବ୍ୟକ୍ତିର ଉଚ୍ଚାରଣ ଅସ୍ପଷ୍ଟତା ଯୋଗୁ ନୁହେଁ, ନକଲକାରଙ୍କର ଶ୍ରୁତିଦୋଷ ଥିଲେ ମଧ୍ୟ ଏହି ଭ୍ରମ ଦେଖା ଦେଇଥାଏ । ଅନେକ ସମୟରେ ନକଲକାର ଶୁଦ୍ଧ ଶବ୍ଦଟିକୁ ଅଶୁଦ୍ଧ କରି ଲେଖି ପକାଇଥାନ୍ତି । ଯଥା – 'ପ୍ରେମ ଚିନ୍ତାମଣି'ରେ ଥିବା 'ସାବଧାନେ ଶୁଣ ଯାହା ଜାଣି ତା କହିବା' ଶବ୍ଦଟି ଅନ୍ୟ ଏକ ପୋଥିରେ 'ସାବଧାନେ ଶୁଣାଯାଏ ଜାଣି ତା କହିବା, ରୂପ ଗ୍ରହଣ କରିଛି । ଏଠାରେ 'ଶୁଣ ଯାହା' ଶବ୍ଦଟି ଶ୍ରବଣ ତ୍ରୁଟି ହେତୁ 'ଶୁଣାଯାଏ' ଶବ୍ଦରେ ରୂପାନ୍ତରିତ ହୋଇଛି ।

## ୪। ଦୃଷ୍ଟି ଦୋଷ ଜନିତ ତ୍ରୁଟି :

ବୟସାଧିକ୍ୟ ନକଲକାରଙ୍କ ଦୃଷ୍ଟି ଶକ୍ତିର ହ୍ରାସତା ତଥା ଦୃଷ୍ଟିଦୋଷ ଥିଲେ ନକଲକାର ତାଳପତ୍ରରେ ଲିଖିତ ଅସ୍ପଷ୍ଟ ଅକ୍ଷରକୁ ଭୁଲ୍ ଭାବେ ଲେଖିଥାନ୍ତି । ଏଭଳି ଏକ ତ୍ରୁଟିର ଉଦାହରଣ 'ପ୍ରେମ ଚନ୍ତାମଣି' ଗ୍ରନ୍ଥରୁ ନିଆଗଲା । ଏହି ଗ୍ରନ୍ଥର ପଚିଶି ଛନ୍ଦରେ ଥିବା "ନୋହିଲା ବୋଲି ସୁଜନେ କଲେ ହାସ୍ୟାସ୍ପଦ" ପଦଟି ଅନ୍ୟ ଏକ ପୋଥିରେ 'ନୋହିଲା ବୋଲି ସୁଜନେ କହେ ହାସ୍ୟାସ୍ପଦ'ରେ ପରିଣତ ହୋଇଛି । ଏଥିରେ ଥିବା ଶୁଦ୍ଧ ଶବ୍ଦ 'କଲେ' ଦୃଷ୍ଟିଦୋଷ ହେତୁ ଅନ୍ୟ ପୋଥିରେ ତ୍ରୁଟିଯୁକ୍ତ ହୋଇ 'କହେ'ରେ ପରିଣତ ହୋଇଛି ।

## ୫। ଅପରିଚିତ ଶବ୍ଦ ସ୍ଥାନରେ ପରିଚିତ ଶବ୍ଦର ପ୍ରୟୋଗ :

କେତେକ ପ୍ରାଚୀନ ଶବ୍ଦ ଅପ୍ରଚଳିତ ହୋଇ ପଡ଼ିବା ଫଳରେ ସେଗୁଡ଼ିକ କ୍ରମେ ଅପରିଚିତ ହୋଇ ପଡ଼ିଥାନ୍ତି । ନକଲକାର ସେହି ଶବ୍ଦକୁ ପୂର୍ବ ନକଲର ଏକ ତ୍ରୁଟି ଭାବି ସେ ସ୍ଥାନରେ ଏକ ପରିଚିତ ଶବ୍ଦର ପ୍ରୟୋଗ କରିଥାନ୍ତି । ଫଳରେ ପାଠ ମଧ୍ୟରୁ ପ୍ରାଚୀନ ଶବ୍ଦଟି ଲୋପ ପାଇ ପାଠରେ ବିକୃତି ଦେଖା ଦେଇଥାଏ। ଏହିପରି ପାଠ ବିକୃତିର ମୁଖ୍ୟ କାରଣ ହେଉଛି ନକଲକାରଙ୍କର ଅଜ୍ଞାନତା । 'ପ୍ରେମ ଚିନ୍ତାମଣି' ଗ୍ରନ୍ଥରୁ ଏହାର ଏକ ସୁନ୍ଦର ଦୃଷ୍ଟାନ୍ତ ଏଠାରେ ପ୍ରଦାନ କରାଯାଇଛି ଯଥା —

"ଏକାନ୍ତେ ଲୋଚଣି ଗଭା
ଫିଟି ପୃଷ୍ଠେ ପଡ଼ି ପାଇଲା ଶୋଭା ଗୋ
ନିନ୍ଦା କଲାକି ପକ୍ଷିଣୀ ପ୍ରଭା

ଏହି ପଦଟିରେ ଥିବା 'ପକ୍ଷିଣୀ ପ୍ରଭା' ଶବ୍ଦଟି ଅନ୍ୟ ଏକ ପୋଥିରେ 'ଯକ୍ଷିଣୀ ପ୍ରଭା'ଭାବେ ଲେଖାଯାଇଛି । ଉପଯୁକ୍ତ ପଦଟିର ଅର୍ଥ ହେଉଛି ଯେ ରାଧାଙ୍କର ଶୁଭ୍ରବର୍ଣ୍ଣର ପୃଷ୍ଠର ମଧ୍ୟଭାଗରେ ଗଭାଟି ଫିଟି ପଡ଼ିଥିବାରୁ କବି ଶ୍ରୀ ରାଧାଙ୍କର ଦୁଇ ପୃଷ୍ଠ ଭାଗକୁ ଦିନ ଓ ମଧ୍ୟରେ ପଡ଼ିଥିବା ବେଣୀକୁ ରାତ୍ରି (ପକ୍ଷିଣୀ ପ୍ରଭା ଅର୍ଥାତ୍ ଦୁଇ ଦିନର ମଧ୍ୟରାତ୍ରି) ବୋଲି କଳ୍ପନା କରିଛନ୍ତି । ମାତ୍ର ନକଲକାର 'ପକ୍ଷିଣୀପ୍ରଭା' ଶବ୍ଦଟିର ଅର୍ଥ ବୁଝି ନପାରି ସେ ସ୍ଥାନରେ ଭାବସାମ୍ୟ ରକ୍ଷା କରୁଥିବା ତା'ର ଏକ ପରିଚିତ ଶବ୍ଦ 'ଯକ୍ଷିଣୀ (ଯକ୍ଷର ସ୍ତ୍ରୀ, ପ୍ରଭା'କୁ ପ୍ରୟୋଗ କରିବା ଫଳରେ କବିଙ୍କର ସୁନ୍ଦର ପରିକଳ୍ପନାଟି ବ୍ୟାହତ ହୋଇଛି ।

## ୬। ପୁନରାବୃତ୍ତି :

ଅନେକ ସମୟରେ ନକଲକାରଙ୍କର ଅନ୍ୟମନସ୍କତା ହେତୁ ପାଠ ମଧ୍ୟରେ ଶବ୍ଦର ପୁନରାବୃତ୍ତି ପୁନର୍ବାର ପରବର୍ତ୍ତୀ ନକଲକାରଙ୍କ ଦ୍ୱାରା ଗୃହୀତ ହୋଇ ପ୍ରତ୍ୟେକ ପ୍ରତିଲିପି ଓ ଅନୁଲିପି ମଧ୍ୟରେ ରହିଯାଇଥାଏ । ଫଳରେ ପାଠରେ ବିକୃତି ଦେଖା ଦେଇଥାଏ । 'ଶତଯୋଜନ' ଶବ୍ଦଟି ନକଲକାରଙ୍କ ଦ୍ୱାରା ପୁନରାବୃତ୍ତି ତ୍ରୁଟି ଯୋଗୁ 'ଶତ ଶତ ଯୋଜନ'ରେ ରୂପାନ୍ତରିତ ହୋଇଯିବାର ଅନେକ ଦୃଷ୍ଟାନ୍ତ ରହିଛି ।

## ୭। ସମାକ୍ଷର ଯୋଗ :

ପୋଥିରେ ଗୋଟିଏ ଅକ୍ଷର ଯଦି କୌଣସି ଶବ୍ଦରେ ଏକାଧିକ ଥର ବ୍ୟବହାର ହୋଇଥାଏ । ତେବେ ନକଲକାର ତାହା ମଧ୍ୟରୁ ଗୋଟିଏ ଅକ୍ଷରକୁ ଅନାବଶ୍ୟକ ଭାବି ପରିତ୍ୟାଗ କରିଥାଏ ଓ ବେଳେ ବେଳେ ସେ ନିଜ ମନକୁ ପାଇଲା ଭଳି ଅକ୍ଷରଟିଏ ଯୋଗ କରି ଶବ୍ଦଟିକୁ ଅର୍ଥବହ କରିଥାଏ । କବି ଅଭିମନ୍ୟୁଙ୍କ 'ପ୍ରେମ ଚିନ୍ତାମଣି'ରୁ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଅନୁଧ୍ୟାନ ଯୋଗ୍ୟ ।





"ଜୟ ଜୟ ଶ୍ରୀଗୁରୁ ପଙ୍କଜ ଚରଣେ
ମମ ମନ ଅଳି ସଦ୍ଧ କରୁ ଅନୁକ୍ଷଣେ ।"(୨।୧)

ଅନ୍ୟଏକ ପୋଥିରେ ଲେଖନକାର ପଦଟିର ଦ୍ୱିତୀୟ ଧାଡ଼ିର ପ୍ରଥମରେ ଥିବା 'ମମ ମନ'ଶବ୍ଦ ଦୁଇଟିରେ ତିନୋଟି 'ମ'ଥିବାରୁ ସେଥି ମଧ୍ୟରୁ ମଧ୍ୟମ'ମ'ଟିକୁ ଲୋପ କରି ତାହା ସ୍ଥାନରେ 'ନ' ଯୋଗ କରିବା ଫଳରେ ତାହା 'ମନ ମନ' ହୋଇଅଛି । ତେଣୁ ଏଠାରେ ଉପଯୁକ୍ତ ଅର୍ଥଟି ବ୍ୟାହତ ହୋଇଛି ।

## ୮। ଅକ୍ଷର, ଶବ୍ଦ ଓ ବାକ୍ୟର କ୍ରମ ପରିବର୍ତ୍ତନ :

ଅନେକ ସମୟରେ ପଦ ମଧ୍ୟରେ ଥିବା ଶବ୍ଦର କ୍ରମ ନକଲକାରଙ୍କ ଅସାବଧାନତା ହେତୁ ଇତଃସ୍ତତ ହୋଇ ଯାଇଥାଏ । ଯଥା "କି ନ ଜାଣ ମୋର ଛାର କରିବଇଁ ବ୍ୟକ୍ତ' ପଦଟିର 'ଛାର' ଶବ୍ଦଟିର କ୍ରମ ବିବର୍ତ୍ତିତ ହେବାରୁ ଅନ୍ୟ ଏକ ପୋଥିରେ ପଦଟି 'କି ନଜାଣ ଛାର ମୋର କରିବଇଁ ବ୍ୟକ୍ତ (ପ୍ରେ.ଚି.୨।୧।୮ଭାବେ ଲିଖିତ ହୋଇଛି ।

## ୯। ପ୍ରାକୃତ ଶବ୍ଦ ସ୍ଥାନରେ ସଂସ୍କୃତ ଶବ୍ଦର ପ୍ରୟୋଗ :

ବେଳେ ବେଳେ ନକଲକାର ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରିବାକୁ ଯାଇ ପ୍ରାକୃତ ବା ତଦ୍ଭବ ଶବ୍ଦ ସ୍ଥାନରେ ସଂସ୍କୃତ ଶବ୍ଦର ପ୍ରୟୋଗ କରିଥାନ୍ତି । ଉଦାହରଣ ସ୍ୱରୂପ 'ପ୍ରେମ ଚିନ୍ତାମଣି'ର ତୃତୀୟ ଛାନ୍ଦରୁ ଗୋଟିଏ ପଦକୁ ଗ୍ରହଣ କରାଯାଇପାରେ । ଯଥା - ଯହିଁର ଶିଳକଣ ମାନ । ପରଶମଣି ଗୁଣଘେନ'(୩ ୫୯) ଏଥିରେ ଥିବା 'ପରଶମଣି' ଶବ୍ଦକୁ ଲେଖନକାର ଅନ୍ୟ ଏକ ପୋଥିରେ 'ସ୍ୱର୍ଣ୍ଣ ମଣି' ଲେଖିଛନ୍ତି ।

## ୧୦ । ସାଧାରଣ ସମରୂପତା ହେତୁ ଶବ୍ଦର ଅଶୁଦ୍ଧ ଲିଖନ :

ସାଧାରଣ ସମରୂପତା ହେତୁ ଶବ୍ଦର ଅର୍ଥ ଗ୍ରହଣ କଲାବେଳେ ଯଦି ଅର୍ଥ ଅସଙ୍ଗତ ନହୁଏ, ତେବେ ଲିଖନକାର ଅନେକ ସମୟରେ ସେହି ସ୍ଥାନରେ ମୂଳ ଶବ୍ଦଟିକୁ ଛାଡ଼ିଦେଇ ଅନ୍ୟ ଏକ ଶବ୍ଦ ଲେଖି ଦେଇଥାଏ । ଯଥା -'ବେଶ ବାସ ତ ହୋଇଛି ବ୍ୟସ୍ତ' ପଦଟି ଅନ୍ୟ ଏକ ପୋଥିରେ "କେଶ ବାସତ ହୋଇଛି ବ୍ୟସ୍ତ" (ପ୍ରେ.ଚି..୪।୧୬) ଭାବେ ଗୃହୀତ ହୋଇଛି ।

ଏଠାରେ 'ବେଶ'ଏବଂ 'କେଶ'ଶବ୍ଦ ଦୁଇଟି ମଧ୍ୟରେ ସାମ୍ୟ ଥିବାରୁ ଏବଂ ପଦ ମଧ୍ୟରେ ଅର୍ଥ ସଙ୍ଗତ ରକ୍ଷା କରୁଥିବାରୁ ନକଲକାର 'ବେଶ' ସ୍ଥାନରେ 'କେଶ' ଲେଖି ଦେଇଛନ୍ତି । ସେହିପରି 'ପ୍ରେମ ନିଗୂଢ଼ ପାଶେ ବନ୍ଧା ମତି - ପ୍ରେମ ନିଗଡ଼ ପାଶେ ବନ୍ଧା ମତି ।"(୪। ୨୯)

## ୧୧। ଅକ୍ଷର ବୃଦ୍ଧି :

ଅନେକ ସମୟରେ ନକଲ କରାଯାଇଥିବା ପୋଥିରେ ଅକ୍ଷର ବା ଶବ୍ଦରେ ନୂତନ ଅକ୍ଷର ବା ଶବ୍ଦର ସଂଯୋଗ ଘଟି ପାଠକୁ ବିକୃତ କରିଥାଏ । ଏହି ପ୍ରକାର ପାଠ ବିକୃତି ଚାରିଟି କାରଣରୁ ହୋଇଥାଏ । ଯଥା —

**(କ) ଶବ୍ଦର ପୁନରାବୃତ୍ତି ହେତୁ** — ଅର୍ଥ ଅସଙ୍ଗତି ଜଣାନଗଲେ ନକଲକାର ଶବ୍ଦର ପୁନରାବୃତ୍ତି କରିପକାଇଥାନ୍ତି ଯଥା - ବ୍ରାହ୍ମଣ ପୁତ୍ରକୁ ଦାନ କରି - ବ୍ରାହ୍ମଣ ପୁତ୍ରକୁ ପୁତ୍ର ଦାନ କରି (ଷୋଳପୋଇ, ୧।୧୫) ଏଠାରେ ପ୍ରଥମ ପଦରେ ଥିବା 'ପୁତ୍ର' ଶବ୍ଦଟି ଦ୍ୱିତୀୟ ପଦରେ ଅର୍ଥ ଅବ୍ୟାହତ ରହୁଥିବାରୁ ନକଲକାର ଦୁଇଥର ଲେଖିଦେଇଛନ୍ତି ।

**(ଖ) ଦୁଇ ପଙ୍‌କ୍ତି ମଧ୍ୟରେ ଅନ୍ୟ ଏକ ପଙ୍‌କ୍ତିର ଆଗମ** — ଅନେକ ସମୟରେ ନକଲକାର ପାଠ ନକଲ କରୁଥିବା ସମୟରେ ପାଠ ମଧ୍ୟରେ ନିଜ ମନରୁ ସମ୍ପୂର୍ଣ୍ଣ ନୂତନ ପଙ୍‌କ୍ତିର ସଂଯୋଗ ଦ୍ୱାରା ପାଠକୁ ବୃଦ୍ଧି କରିଦେଇଥାନ୍ତି । ଉଦାହରଣ ସ୍ୱରୂପ ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସମ୍ପାଦିତ ସାରଳା ମହାଭାରତର କର୍ଣ୍ଣ ପର୍ବରୁ ଏକ ଦୃଷ୍ଟାନ୍ତ ଗ୍ରହଣ କରାଯାଇପାରେ । ଡ଼ଃ ମହାନ୍ତିଙ୍କ ଦ୍ୱାରା ଗୃହୀତ ଶୁଦ୍ଧ ପାଠଟି ହେଉଛି ।

"ମାରନ୍ତେଣ ଶେଷ ଯେ ହୋଇଲେ ସର୍ବବୀରେ
ରଣ ରଙ୍ଗେ ଆସନ୍ତି ଯେ ପାଣ୍ଡବ ସୁନ୍ଦରେ । ୧୯୩।



ଦିନକର ନାଥ ଆସି ହୋଇଲେକ ଅସ୍ତ
ସମରେ ପଡ଼ିଲେ ମାନଗୋବିନ୍ଦର ଅଠାଶଇ ଭ୍ରାତ"।୧୯୪।

କିନ୍ତୁ ଡଃ ମହାନ୍ତିଙ୍କର 'ଖ', 'ଠ' ଓ 'ନ'ପୋଥିର ଏହି ୧୯୩ ଓ ୧୯୪ପଦ ମଧ୍ୟରେ ଅତିରିକ୍ତ ପଦ ଦୃଷ୍ଟି ଗୋଚର ହୋଇଥିବା ସେ ଉଲ୍ଲେଖ କରିଛନ୍ତି । ତାହା ହେଉଛି—

"ସବୁନ୍ତି ମାରି ମାରୁଛି ଏକଠାବ କରି
ଯେକରେ ପରେ ଲଦିଲା ଆରେକକୁ ଧରି ।"

**(ଗ) ପ୍ରକ୍ଷିପ୍ତ** — (ଅର୍ଥାତ୍ ପାଠ ମଧ୍ୟରେ ସମ୍ପୂର୍ଣ୍ଣ ନୂତନ ଶବ୍ଦର ଆଗମ) ଯଥା - ମୋ ରାଣ ଅଛିଟିରେ ଘନଶ୍ୟାମ > ମୋ ରାଣ ଖାଉ ଅଛିଟିରେ ଘନଶ୍ୟାମ । (ପ୍ରେ.ଚି.୧୧।୨୯)ଏଠାରେ'ଖାଉ'ଶବ୍ଦଟି ସମ୍ପୂର୍ଣ୍ଣ ଏକ ନୂତନ ଶବ୍ଦ, ଯାହା ଅନ୍ୟ ପୋଥିର ପାଠରେ ସଂଯୁକ୍ତ ହୋଇଛି ।

**(ଘ) ଏକ ପ୍ରକାର ଲେଖାର ପ୍ରଭାବ ହେତୁ ପାଠର ଅଭିବୃଦ୍ଧି** — ସାରଳା ମହାଭାରତର ଗୋଟିଏ ପୋଥିରେ ଭୀମସେନ ସହିତ କୌରବଙ୍କର ଯେଉଁ ଯୁଦ୍ଧ ସଂକ୍ଷେପରେ ବର୍ଣ୍ଣନା କରାଯାଇଛି, ସେହି ବର୍ଣ୍ଣନା ନକଲକାରଙ୍କୁ ପ୍ରଭାବିତ କରିବା ଫଳରେ ସେ ତାହାକୁ ବିସ୍ତୃତ କରିବାକୁ ଯାଇ କିପରି ପାଠର ଅଭିବୃଦ୍ଧି କରିଛନ୍ତି, ତାହା ନିମ୍ନ ଦୃଷ୍ଟାନ୍ତରୁ ବୁଝିହେବ । ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ଗୃହୀତ ଶୁଦ୍ଧପାଠ —

"ସହସ୍ରନ୍ତ ବୁଲାଇ ଧାଇଁ ସେ ମହାନାଦ କରି
ମାର ମାର ବୋଲି ଭୀମସେନ କଇଂ ବେଢ଼ି ।"
(କର୍ଣ୍ଣପର୍ବ)୧୫୭।୨୦)

'ଜ' ପୋଥିରେ ଥିବା ଅଧିକ ପାଠ —

"ସମସ୍ତେ ଧାଇଁଲେ ସେ କଇଞ୍ଚା ଜଗଜ୍ଜେଠୀ
ଗଦା ଶାବେଳୀ ନେଇ ଭୀମସେନ ଉପରେଣ ପିଟି ।
ତାହା ଦେଖି ଭୀମସେନ ବାମ ଅଙ୍ଗ ଦିଲା ପାତି
ପଡ଼ିଣ ସର୍ବ ଶହସ୍ର ଚୂର୍ଣ୍ଣ ହୋଇଲାକ ଝାତି ।"

## ୧୨। ଶବ୍ଦ ବିପର୍ଯ୍ୟୟ :

ଅନେକ ସମୟରେ ଯତିପାତରେ ବ୍ୟତିକ୍ରମ ନ ଘଟୁଥିବା ହେତୁ ନକଲକାର ଅଜ୍ଞାନ ବଶତଃ ବାକ୍ୟ ମଧ୍ୟରେ ଥିବା ଶବ୍ଦକୁ ଏପଟ ସେପଟ କରିଦେଇଥାନ୍ତି ଯଥା - 'ଉଛୁର ଅହନି ହୋଇଲାନି > ଉଛୁର ହୋଇଲାନି ଅହନି'(ପ୍ରେ.ଚି. ୧୧।୭)

## ୧୩। ମୂଳ ଶବ୍ଦ ସ୍ଥାନରେ ନୂତନ ଶବ୍ଦର ସଂସ୍ଥାନ :

ନକଲକାର ନକଲ କଲାବେଳେ ଅର୍ଥରେ ଅସଙ୍ଗତି ନ ଆସୁଥିବାରୁ ମୂଳ ଶବ୍ଦକୁ ସମ୍ପୂର୍ଣ୍ଣ ପରିହାର କରି ତା ସ୍ଥାନରେ ନୂତନ ଶବ୍ଦର ସଂସ୍ଥାନ କରିଥାନ୍ତି ଯଥା - "ଏମନ୍ତ ଆଜ୍ଞା ମାତା ଦେଇଗଲେ= ଏମନ୍ତ ଆଜ୍ଞା ମାତା ଜଣାଇଲେ । (ପ୍ରେ.ଚି. ୧୧।୮)

## ୧୪। ଅଜାଣତରେ ହୋଇଥିବା ଭୁଲକୁ ସଜାଡ଼ିବାର ପ୍ରଯତ୍ନ :

ପୂର୍ବ ନକଲକାର ଅଜାଣତରେ ଏକ ଶବ୍ଦକୁ ଭୁଲ ଲେଖିଥିଲେ ନକଲକାର ତାହାର କାରଣ ବୁଝିବାକୁ ଚେଷ୍ଟା ନକରି ନିଜ ଦୃଷ୍ଟିକୋଣରୁ ଅର୍ଥର ସଙ୍ଗତି ଆଣିବାପାଇଁ ସେହି ଭୁଲଶବ୍ଦକୁ ବଦଳାଇବାକୁ ଯାଇ ଆହୁରି ଭୟଙ୍କର ଭୁଲ କରିବସିଥାଏ । ଏହାଦ୍ୱାରା ମୂଳ ଲେଖାର ତାତ୍ପର୍ଯ୍ୟ ନଷ୍ଟ ହୋଇ ତାହା ବିକୃତ ରୂପ ଧାରଣ କରିଥାଏ । ପ୍ରେମ ଚିନ୍ତାମଣିର ଏକ ଉଦାହରଣରୁ ତାହା ଲକ୍ଷ୍ୟ କରାଯାଇପାରେ । ଯଥା —

ହରିପ୍ରିୟ ଲୋକେ ସୁଧା ପାଇବେ
ରାକ୍ଷସ ସ୍ୱାଭାବିକେ ତ ସୁରା ପାଇବେ । (୧।୮୪)

ପ୍ରାପ୍ତ ଏକ ପ୍ରତିଲିପିରେ ୨ୟ ଧାଡ଼ିଟି "ରାକ୍ଷସ ସ୍ୱଭାବ କେତେ ସୁରା ପାଇବେ" ଏବଂ ଅନ୍ୟ ଏକ ପ୍ରତିଲିପିରେ "ରାକ୍ଷସ ସ୍ୱଭାବୁଁ କେତୁ ସୁରା ଖାଇବେ" ହୋଇଛି । ଏଠାରେ ପ୍ରଥମ ନକଲକାର ଅସାବଧାନତା ବଶତଃ ରାକ୍ଷସ ସ୍ୱଭାବ କେତ ସୁରା ପାଇବେ ଲେଖିବା







ସମ୍ଭବପର । କିନ୍ତୁ ପରବର୍ତ୍ତୀ ଲେଖନକାର ନିଜ ଦୃଷ୍ଟିକୋଣରୁ ଅର୍ଥ ସଙ୍ଗତି ଆଣିବାକୁ ଯାଇ 'ସ୍ୱଭାବ'କୁ 'ସ୍ୱଭାବୁଁ' କରି 'କେତ'କୁ 'କେତୁ'କରି 'ପାଇବେ'କୁ ଖାଇବେ' କରି 'ରାକ୍ଷସ ସ୍ୱଭାବ ହେତୁ କେତୁ ସୁରା (ମଦ୍ୟ) ଖାଇବେ' ଏହିପରି ଅର୍ଥ ଆଣିବାକୁ ଚେଷ୍ଟା କରିଛି । କିନ୍ତୁ ମୂଳ ଲେଖାର ତାତ୍ପର୍ଯ୍ୟ ହେଉଛି ରାକ୍ଷସ ସ୍ୱଭାବର ଲୋକେ ପ୍ରେମଚିନ୍ତାମଣି ରସରୂପକ ସୁରା ପାଇବାର ଅନୁଭବ କରିବେ ।

### ୧୫। ଶବ୍ଦ ମଧ୍ୟରେ ବର୍ଣ୍ଣ ବିପର୍ଯ୍ୟୟ :

ଦୀର୍ଘ ସମୟ ଧରି ନକଲ କରୁଥିବାରୁ ଅନ୍ୟମନସ୍କତା ହେତୁ ନକଲକାର ଶବ୍ଦ ମଧ୍ୟରେ ବର୍ଣ୍ଣବିପର୍ଯ୍ୟୟ କରି ଲେଖି ଦେଇଥାନ୍ତି, ଯଦ୍ୱାରା ପଦର ଅର୍ଥ ପ୍ରକାଶରେ ବାଧା ସୃଷ୍ଟି ହୋଇଥାଏ । ଯଥା - 'ବିନିମୟ' ଶବ୍ଦଟି ବର୍ଣ୍ଣ ବିପର୍ଯ୍ୟୟ ହୋଇ ଯଦି 'ବିନିୟମ' ଲେଖାଯାଏ ତେବେ ଏହାର ଅର୍ଥ କିପରି ବ୍ୟାହତ ହେଉଛି ତାହା ସହଜଲବ୍ଧ ।

### ୧୬। ମାତ୍ରା ଲୋପ ହେତୁ ଶବ୍ଦ ବିଭ୍ରାନ୍ତି :

ଅସାବଧାନତାବଶତଃ ଯଦି ଅକ୍ଷର ମଧରୁ ମାତ୍ରା ଲୋପ ପାଇଯାଏ ତେବେ ଶବ୍ଦ ବିଭ୍ରାନ୍ତି ଘଟିଥାଏ । ଫଳରେ ପାଠର ଅର୍ଥ ବ୍ୟାହତ ହୁଏ । 'ପ୍ରେମ ଚିନ୍ତାମଣି'ର ଗୋଟିଏ ଦୃଷ୍ଟାନ୍ତ ହେଲା—

ଘୂର୍ଣ୍ଣାୟମାନ ନୟନ ଯୁଗଳ >
ଘୂର୍ଣ୍ଣାୟମନ ନୟନ ଯୁଗଳ ।।(୪।୨୫)

'ଘୂର୍ଣ୍ଣାୟମାନ' ଶବ୍ଦଟି ମଧରେ ଥିବା 'ମା'ରୁ ଆ' କାରଟି ଲୋପ ହୋଇଯିବାରୁ ତାହା ଘୂର୍ଣ୍ଣାୟମନ'ରେ ପରିଣତ ହୋଇ ଏକ ନୂତନ ଶବ୍ଦ ଓ ନୂତନ ଅର୍ଥ ସୃଷ୍ଟି କରିଛି ।

### ୧୭। ପଦ ବା ଶବ୍ଦର ବିକୃତ ରୂପ ଗ୍ରହଣ :

ପଙ୍କ୍ତି ମଧରେ ଥିବା ଶବ୍ଦର ସଠିକ୍ ଅର୍ଥ ବୁଝି ନପାରି ନକଲକାର ପରବର୍ତ୍ତୀ କିମ୍ବା ପୂର୍ବବର୍ତ୍ତୀ ଅକ୍ଷର ସହିତ ତାହାକୁ ମିଶାଇ ଲେଖିବା ଫଳରେ ଶବ୍ଦଟି ବିକୃତ ହୋଇ ଭୁଲ ଅର୍ଥ ପ୍ରକାଶ କରିଥାଏ ।

ଉଦାହରଣ -

"ପ୍ରୀତିବନ୍ଧୁଙ୍କୁ ପ୍ରଥମେ ଶରଣ
ତ୍ରୟୋତର ଶ୍ରୀ ତଦନ୍ତେ ଜଣାଣ"
(ପ୍ରେ.ଚି.୧୭।୪)

ରେଖାଙ୍କିତ ପଦଟିର ଅର୍ଥ ହେଉଛି ତିନିଥର ଶ୍ରୀ ଲେଖିବା ପରେ ଅର୍ଥାତ୍ 'ଶ୍ରୀ ଶ୍ରୀ ଶ୍ରୀ (କୃଷ୍ଣ) ଏପରି ଲେଖି ତତ୍ପରେ ଜଣାଣ କରିଛନ୍ତି । କିନ୍ତୁ ପଦଟିର 'ତ୍ରୟୋତର' ଶବ୍ଦକୁ ବୁଝି ନପାରି ନକଲକାର ଦୁଇ ପଦ ମଧରେ ଥିବା 'ଶ୍ରୀ' ଓ 'ତ' ଅକ୍ଷର ଦୁଇଟିକୁ ପୂର୍ବ ଶବ୍ଦ 'ତ୍ରୟୋତର'ରେ ସଂଯୁକ୍ତ କରିବାରୁ ପଦଟି 'ତ୍ରୟୋତରଶ୍ରିତ ଦନ୍ତେ ଜଣାଣ' ହୋଇଛି । ଫଳରେ ଏହାର କୌଣସି ଅର୍ଥ ବୁଝାଯାଉନାହିଁ ।

### ୧୮। ଅନ୍ଧଯୁକ୍ତିର ବଶବର୍ତ୍ତୀ ହୋଇ ନୂତନ ଶବ୍ଦର ପ୍ରୟୋଗ :

ଅନେକ ସମୟରେ ନକଲକାର ଶବ୍ଦର ଅର୍ଥକୁ ବୁଝି ନପାରି ଅଯୌକ୍ତିକ ଭାବେ ତା ସ୍ଥାନରେ ଅନ୍ୟ ଏକ ଶବ୍ଦକୁ ଲେଖି ଦେବା ଦ୍ୱାରା ପାଠର ମୂଳ ଅର୍ଥଟି ବ୍ୟାହତ ହୋଇଥାଏ । ଏ ସମ୍ପର୍କରେ 'ପ୍ରେମ ଚିନ୍ତାମଣି' ଗ୍ରନ୍ଥରୁ କେତୋଟି ଦୃଷ୍ଟାନ୍ତ ଦିଆଯାଇପାରେ । ପ୍ରେମ ଚିନ୍ତାମଣିରେ ଥିବା 'କୁଞ୍ଜ ଛିଦ୍ରେ ଦେଖି ତବ ମୁଖକୁ' ପଦଟିର କୁଞ୍ଜ ଶବ୍ଦଟି ଅନ୍ୟ ଏକ ପୋଥିରେ କୁଂ' ଭାବେ ଲେଖାଯାଇଛି । ଏଠାରେ ନକଲକାର କୁଞ୍ଜ ଛିଦ୍ରର ଅର୍ଥ ବୁଝି ନପାରି ତାହାକୁ (କୁଞ୍ଚ) ଛିଦ୍ର ଭାବେ ଗ୍ରହଣ କରି ଏହି ଶବ୍ଦଟିକୁ ପ୍ରୟୋଗ କରିଛନ୍ତି । କିନ୍ତୁ ନକଲକାରଙ୍କର ଏପରି ଅନୁମାନ ସଂପୂର୍ଣ୍ଣ ଅଯୌକ୍ତିକ । କାରଣ କୁଞ୍ଜରେ ରାଧାକୃଷ୍ଣ ଶୟନ କରିଥିବା ବେଳେ କୁଞ୍ଜର ଛିଦ୍ର (କୁଞ୍ଜ ଛିଦ୍ର) ବାଟେ ଚନ୍ଦ୍ର କିରଣ ପ୍ରବେଶ କରିଥିବାର ବର୍ଣ୍ଣନା ଏଥିରେ ରହିଛି । ତେଣୁ 'କୁଞ୍ଜ ଛିଦ୍ର' ଶବ୍ଦଟି ଅତ୍ୟନ୍ତ ଯୁକ୍ତିଯୁକ୍ତ । ମାତ୍ର ନକଲକାରଙ୍କ ଅର୍ଥ ଅବବୋଧ ନ ହେବାରୁ ଅନ୍ଧଯୁକ୍ତିର ବଶବର୍ତ୍ତୀ ହୋଇ ସେ ଶବ୍ଦଟିକୁ 'କୁଞ୍ଚଛିଦ୍ର' ଭାବେ ଗ୍ରହଣ କରିବା ଦ୍ୱାରା ପଦଟିର ମୌଳିକ ଅର୍ଥ ବ୍ୟାହାତ ହୋଇଛି ।







ସେହିଭଳି 'ପ୍ରେମ ଚିନ୍ତାମଣି'ର ଆଉ ଗୋଟିଏ ଦୃଷ୍ଟାନ୍ତ ହେଲା—

କେତେ ମୋତେ ଡିଆଗିଲେ ବୋଲ ନ ଘେନିଇ
କାଳକ ବାଳକ ସଙ୍ଗେ ଲୀଳା କରୁଥାଇ"
(୬।୧୩)

ପଦଟିରେ ଥିବା 'କାଳକ' ଶବ୍ଦଟି ଅନ୍ୟ ଏକ ପୋଥିରେ ନକଲକାରଙ୍କ ଦ୍ୱାରା 'ବାଳକ' ଭାବେ ଲେଖାଯାଇଛି । ଏହି ଭୁଲ ନକଲକାରଙ୍କର ଅର୍ଥ ଅବବୋଧ ଜନିତ ଏବଂ ଅନ୍ଧଯୁକ୍ତି ବଳରେ ସେ ତାହାକୁ 'ବାଳକ' ବୋଲି ଗ୍ରହଣ କରିବା ଦ୍ୱାରା ଅର୍ଥରେ ଅସଙ୍ଗତି ଦେଖାଦେଇଛି ।

## ୧୯। ଦ୍ରୁତ ଲିଖନ ଜନିତ ତ୍ରୁଟି :

ତାଳପତ୍ରରେ ଲିଖିତ କ୍ଷୁଦ୍ର ଅକ୍ଷରଗୁଡ଼ିକୁ ଦ୍ରୁତବେଗରେ ଲେଖିବା ପାଇଁ ଚେଷ୍ଟା କରିବା କାଳରେ ନକଲକାର ପାଠ ମଧ୍ୟରେ ଅକ୍ଷର ଲୋପ, ଅକ୍ଷର ଯୋଗ, ବର୍ଣ୍ଣ ପରିବର୍ତ୍ତନ ଓ ମାତ୍ରା ଯୋଗ କରି ପକାଇଥାନ୍ତି । ଫଳରେ ପାଠ ବିକୃତି ଦେଖା ଦେଇଥାଏ । ଏହି ତ୍ରୁଟି କିଭଳି ହୋଇଛି ତାହା ନିମ୍ନ ଦୃଷ୍ଟାନ୍ତର ଜଣାଯାଇପାରିବ ।

ଯଥା — କ୍ରମେ ଆସି ଋଷି ସିଂହ >
କ୍ରମେସି ଋଷି ସିଂହ (ଅକ୍ଷର ଲୋପ)
(ଷୋଳପୋଇ, ୧୭)

ନିନ୍ଦିଘୋଷେ ଯାଇ ବିଜେ କଲେ >
ନନ୍ଦିଘୋଷେ ଯାଇ ବିଜେ କଲେ ସେ
(ଅକ୍ଷର ଯୋଗ)(ତତ୍ରୈବ ଗୀତ-୧୫)

ରାମ ଭ୍ରମେ ପଶିଲେକ ତହିଁ ସେ >
ରାମ ଭ୍ରମେ ପଶିଲେଇଁ ତହିଁ ସେ
(ବର୍ଣ୍ଣ ପରିବର୍ତ୍ତନ)

ହେବି ଅନଳ ନଳେଦହନ୍ତା ସେ >
ହେବି ଅନୀଳ ନୀଳଦହନ୍ତା ସେ
(ଅଧିକ ମାତ୍ରା ଯୋଗ) (ଗୀତ- ୧୬)

କେ ବୋଲେ ଦେଖଣାହାରୀ ସେ >
କେ ବୋଲେ ଦକ୍ଷିଣହାରୀ ସେ
(ମାତ୍ରା ଯୋଗ) (ପୋଇ -୯)

ମୁଣ୍ଡ କାଟି ଚଳେ ଖରତର ସେ >
ମୁଣ୍ଡ କାଟି ଖରତର ସେ (୧୧।୧୦)

ଲଙ୍କାକବାଟ ଫିଟିଲା ଧୀର ସେ >
ଲଙ୍କାକୁ ବାଟ ଫିଟି ସଧୀର ସେ
(ବାଚ୍ୟ ପରିବର୍ତ୍ତନ)

ଉପରେ ପ୍ରଦତ୍ତ ଦୃଷ୍ଟାନ୍ତଗୁଡ଼ିକ ଉପେନ୍ଦ୍ର ଭଞ୍ଜଙ୍କ 'ଷୋଳପୋଇ'ରୁ ଓ ବିଭିନ୍ନ ନକଲ ପୋଥିରୁ ଗୃହୀତ । ଏହିସବୁ ତ୍ରୁଟି ଲିଖନକାରଙ୍କର ଦ୍ରୁତ ଲେଖନ ଫଳରେ ସଂଘଟିତ ହୋଇଥାଏ ।

## ୨୦। ଅଶୁଦ୍ଧ ସମାସ ହେତୁକ ଭ୍ରମ :

ସମୟ ସମୟେ ନକଲକାରମାନେ ମୂଳ ଲେଖାର ସମାସର ଅନ୍ତର୍ନିହିତ ଅର୍ଥକୁ ବୁଝି ନପାରି ନିଜେ ଏକ ସମସ୍ୟାମାନ ପଦ ଲେଖି ଦେବା ଦ୍ୱାରା ତାହା ମୂଳ ଶବ୍ଦର ଅର୍ଥଠାରୁ ସ୍ୱତନ୍ତ୍ର ଅଲଗା ଏକ ଅର୍ଥ ପ୍ରକାଶ କରିଥାଏ । ଫଳରେ ପାଠ ମଧ୍ୟରେ ଅର୍ଥଗତ ବିଭ୍ରାନ୍ତ ସୃଷ୍ଟି ହୋଇଥାଏ । ଏଠାରେ 'ପ୍ରେମ ଚିନ୍ତାମଣି'ର ଗୋଟିଏ ପଦକୁ ଲକ୍ଷ୍ୟ କଲେ ଏହି ଭ୍ରମ ସ୍ପଷ୍ଟ ହୋଇଯିବ । ଶୁଦ୍ଧ ପାଠରେ ଗୃହୀତ ଠିକ୍ ସମାସଟି ହେଉଛି—

"କୋଟିଏ- ଲାବଣ୍ୟ- ସିନ୍ଧୁ-ସୁତଶୋଭା
ଗତିର ପରାୟେ ହରି"(୨୬।୨୩)

ଏଠାରେ ସିନ୍ଧୁସୁତ ଅର୍ଥ ଚନ୍ଦ୍ରକୁ ବୁଝାଇଥାଏ । ମାତ୍ର ଅନ୍ୟ ଏକ ପୋଥିରେ ନକଲକାର ନକଲ କଲାବେଳେ ସିନ୍ଧୁସୁତକୁ 'ସିନ୍ଧୁଜିତ'(ଅର୍ଥାତ୍ କୋଟିଏ ଲାବଣ୍ୟ ସିନ୍ଧୁକୁ ଯେ ଜୟ କରିଛି) ଭାବେ ଗ୍ରହଣ କରି ପଦଟିକୁ 'କୋଟିଏ ଲାବଣ୍ୟ ସିନ୍ଧୁଜିତ ଲୋଭା ଗତିର ପରାୟେ ହରି'ରେ ରୂପାନ୍ତରିତ କରି ଦେଇଛନ୍ତି । ନକଲକାର ଏଠାରେ 'ଲାବଣ୍ୟ ସିନ୍ଧୁକୁ ଯେ ଲୋଭାଗତି







ଚୟ କରିଛି' ଅର୍ଥରେ ଲାବଣ୍ୟ ସିନ୍ଧୁଚିତ ଲୋଭାପତି ସମାସ କରିଛନ୍ତି । ଏହି ଅଶୁଦ୍ଧ ସମାସଟି ଲେଖାଯିବା ଦ୍ୱାରା ମୂଳ ଲେଖାର ଅର୍ଥ ବ୍ୟାହତ ହେବା ସଙ୍ଗେ ସଙ୍ଗେ ସମାସ ମଧ୍ୟ ଅଶୁଦ୍ଧ ହୋଇଯାଇଛି ।

## ୨୧। ସଂକ୍ଷିପ୍ତ ରୂପରେ ମିଥ୍ୟାର୍ଥ ପ୍ରକାଶ :

ଅନେକ ସମୟରେ ମୂଳ ପୋଥିର ଶବ୍ଦକୁ ବୁଝି ନପାରିବା ଫଳରେ ନକଲକାର ଏହା ସଂକ୍ଷିପ୍ତ କରି ସେଥିରୁ ଆଉ ଗୋଟିଏ ଅର୍ଥର ସନ୍ଧାନ ନେଇଥାଏ । ଉଦାହରଣ ସ୍ୱରୂପ 'ପ୍ରେମ ଚିନ୍ତାମଣି'ର ଗୋଟିଏ ପଙ୍‌କ୍ତିକୁ ଏଠାରେ ଉଦାହରଣ ଦିଆଯାଇପାରେ ।

'ତେଣେ ତନମନ ହେବାରେ ସାତ୍ତ୍ୱିକ ବିଭ୍ରମ କରିଛନ୍ତି ମନ' (୨୩।୨୧) ଏଠାରେ 'ତନମନ' ଶବ୍ଦର ଅର୍ଥ ତନୁ ଏବଂ ମନ । କିନ୍ତୁ ନକଲକାର ଏହାକୁ ସଂକ୍ଷିପ୍ତ କରି 'ତନ୍ମନ' ଲେଖିବାରୁ ତାହାର ଏକ ମିଥ୍ୟାର୍ଥ ପ୍ରକାଶ ପାଇଛି । ଅର୍ଥାତ୍ 'ତାହାଠାରେ ମନ' ଅର୍ଥରେ ନକଲକାର ଗ୍ରହଣ କରିଛନ୍ତି ।

## ୨୨। ନାମବାଚକ ସଂଖ୍ୟା ବିଭ୍ରାନ୍ତି :

ପୂର୍ବକାଳରେ ସଂଖ୍ୟାଗୁଡ଼ିକୁ ନାମ ଆକାରରେ ଲେଖାଯାଉଥିଲା । ଯଥା —

୧- ଚନ୍ଦ୍ର, ସୂର୍ଯ୍ୟ, ୨- ପକ୍ଷ, ୩- ଗୁଣ, ୪ - ବେଦ, ୫ -ବାଣ, ୬ -ଋତୁ, ୭ -ଋଷି,ବାର, ୮ - ବସୁ, ୯ - ଗ୍ରହ, ୧୦ -ଦିଗ, ୧୧ -ରୁଦ୍ର, ୧୨ -ଆଦିତ୍ୟ

ଏହି ଶବ୍ଦଗୁଡ଼ିକୁ ସଂଖ୍ୟା ଅର୍ଥରେ ଗ୍ରହଣ କରି ବାକ୍ୟକାର ତାଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ କରିଥିଲେ ହେଁ ନକଲକାର ତାହାକୁ ବୁଝି ନପାରି ଭୁଲ ଶବ୍ଦ ବୋଲି ଗ୍ରହଣ କରିଥାଏ । ତେଣୁ ସେ ମୂଳ ଶବ୍ଦ ସ୍ଥାନରେ ଏକ ଶୁଦ୍ଧ ଶବ୍ଦ ଭରଣା କରିବାକୁ ଯାଇ ଏକ ନୂତନ ଶବ୍ଦ ଯଥା 'ବାଣ' ସ୍ଥାନରେ 'ବାମ' ବା 'ବାତ' ଲେଖିବାରୁ ଭୁଲ ଅର୍ଥ ପ୍ରକାଶିତ ହୋଇଥାଏ ।

## ୨୩। ଅଙ୍କ ଲିଖନରେ ବିଭ୍ରାନ୍ତି :

ପୋଥିରେ ଅଙ୍କଗୁଡ଼ିକ ଅକ୍ଷର ଅପେକ୍ଷା କ୍ଷୁଦ୍ର ଭାବେ ଲେଖାଯାଇ ଥିବାରୁ ସେଗୁଡ଼ିକ ନକଲକାରଙ୍କୁ ଅସ୍ପଷ୍ଟ ହେବାରୁ ସେ ତାହାକୁ ଭୁଲ ଲେଖି ଦେଇଥାଏ । ଫଳରେ ପାଠରେ ଏକ ବିରାଟ ଧରଣର ଭ୍ରମ ଆସିଥାଏ, ଯାହାକି ପରବର୍ତ୍ତୀ ନକଲକାରମାନେ ସେହି ଭୁଲ ଅଙ୍କକୁ ଗ୍ରହଣ କରି ଠିକ ବୋଲି ପ୍ରତିପାଦିତ କରିଥାନ୍ତି ।

## ୨୪। ଅକ୍ଷର, ଶବ୍ଦ ଓ ପଙ୍‌କ୍ତିଗୁଡ଼ିକରେ ସାମ୍ୟତା ହେତୁ ପାଠ ବିଲୁପ୍ତି :

ଯଦି ପାଠ ମଧ୍ୟରେ ଏକ ପ୍ରକାର ଅକ୍ଷର, ଶବ୍ଦ, ପଙ୍‌କ୍ତି ପାଖାପାଖି ରହିଥାନ୍ତି ବା ସର୍ବଯମକ ଭଳି ଅଳଙ୍କାରରେ ଭିନ୍ନାର୍ଥ ବୋଧକ ଏକ ପ୍ରକାରର ଦୁଇଟି ପଙ୍‌କ୍ତି ତଳ ଉପର ହୋଇ ରହିଥାଏ, ସେତେବେଳେ ନକଲକାର ତାହାକୁ ପୁନରାବୃତ୍ତି ଭାବି ଗୋଟିଏ ଅକ୍ଷର, ଶବ୍ଦ ବା ପଙ୍‌କ୍ତିକୁ ପରିତ୍ୟାଗ କରି ସଂଶୋଧନ କରିବାକୁ ଚେଷ୍ଟା କରିଥାଏ । ଯଥା — 'ଲାବଣ୍ୟବତୀ'ରେ ପ୍ରଦତ୍ତ ସର୍ବଯମକ ଅଳଙ୍କାର

"ଅହିମକର ତାପ ନାଶେ ଶୋଭା ସାରସ ଚକ୍ରେ
ଅହି ମକର ତାପ ନାଶେ ଶୋଭା ସାରସ ଚକ୍ରେ ।"

ଏଥିରୁ ଗୋଟିଏ ପଦ ଅବଲୁପ୍ତ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ସେହିଭଳି 'ବୈଦେହୀଶ ବିଳାସ'ର ମାଳଯମକ 'ବହଇ ନିର୍ଝର ଝର ଝର ଅବିରତ ' ପଦରୁ 'ଝରି' ଶବ୍ଦ ମଧ୍ୟ ଅବଲୁପ୍ତ ହୋଇଯାଇପାରେ ।

## ୨୫। ପୂର୍ଣ୍ଣଚ୍ଛେଦର ମନମୁଖୀ ପ୍ରୟୋଗ :

ଅନେକ ପ୍ରାଚୀନ ପୋଥିରେ, ବାକ୍ୟ ମଧ୍ୟରେ ବହୁ ପୂର୍ଣ୍ଣଚ୍ଛେଦ ଥିବାର ଦେଖାଯାଇଥାଏ ।ଏହାର ନିର୍ଦ୍ଦିଷ୍ଟ କାରଣ ନିରୂପଣ କରିବା ଯଦିଓ ସମ୍ଭବପର ନୁହେଁ, ତଥାପି ଏପରି ଭୁଲ ନକଲକାରଙ୍କ ଦ୍ୱାରା ଯେ ହୋଇଥାଏ- ଏଥିରେ ଦ୍ୱିମତ ନାହିଁ । ଅନ୍ୟମନସ୍କତା ଯୋଗୁ ହେଉ ବା ଅସାବଧାନତା ହେତୁ ହେଉ, ପୋଥିର ପାଠକୁ ପଢ଼ି ଲେଖିବା କାଳରେ







ନକଲକାର ଯେଉଁଠାରେ ବିଶ୍ରାମ ନେଇଥାନ୍ତି, ବୋଧହୁଏ ସେହି ସମୟରେ ଏପରି ପୂର୍ଣ୍ଣଚ୍ଛେଦ ଦେଇ ପକାଇଥାନ୍ତି । ଫଳରେ ଗୋଟିଏ ବାକ୍ୟ ବହୁ କ୍ଷୁଦ୍ର ବାକ୍ୟରେ ପରିଣତ ହେବା ସଙ୍ଗେ ସଙ୍ଗେ ଅକ୍ଷର ନିକଟବର୍ତ୍ତୀ ପୂର୍ଣ୍ଣଚ୍ଛେଦଟି ଆ'କାର ଭ୍ରମ ସୃଷ୍ଟି କରିଥାଏ । ଫଳରେ ନକଲକାର ପୋଥିର ପ୍ରତିଲିପି ସୃଷ୍ଟି କାଳରେ ସେହି ଭୁଲକୁ ଗ୍ରହଣ କରି ନେଇଥାଏ ।

**୨୬। ସ୍ଥାନଚ୍ୟୁତ :**

ଏକ ପ୍ରକାର ପୋଥିର ଏକାଧିକ ନକଲକୁ ମିଳାଇ ଦେଖିଲେ ଜଣାଯାଏ ଯେ କେତେକ ପୋଥିରେ ସ୍ଥାନେ ସ୍ଥାନେ ପାଠ ପରିତ୍ୟକ୍ତ ଘଟିଛି । ଏହାର କାରଣ ହେଉଛି ସ୍ଥାନଚ୍ୟୁତି । ଦୀର୍ଘ ସମୟ ଧରି ଧୈର୍ଯ୍ୟର ସହିତ ପୋଥି ନକଲ କରିବା ସହଜସାଧ୍ୟ କାର୍ଯ୍ୟ ନୁହେଁ । ସମୟେ ସମୟେ ନକଲକାରଙ୍କର ଅସାବଧାନତା ସ୍ୱତଃ ଆସିଯାଇଥାଏ । ନକଲ ଅଂଶର ପରବର୍ତ୍ତୀ କେତେ ପଦ ପରେ ଯଦି ଏକ ପ୍ରକାର ପଦ ବା ପଙ୍କ୍ତି ଥାଏ, ତେବେ ନକଲକାରଙ୍କର ଦୃଷ୍ଟି ତା ଉପରେ ପଡ଼ିଗଲେ, ଯେ ସେହିଠାରୁ ନକଲ କରିବା ଆରମ୍ଭ କରି ଦେଇଥାନ୍ତି । ତେଣୁ ମଧ୍ୟରେ ଥିବା ପାଠ ପରିତ୍ୟକ୍ତ ହୋଇଯାଇଥାଏ । ଫଳରେ ଯତିପାତ ଓ ପ୍ରସଙ୍ଗରେ ବ୍ୟାହତ ସୃଷ୍ଟି ହୁଏ । ଏତଦ୍ ବ୍ୟତୀତ ଜୀର୍ଣ୍ଣଶୀର୍ଣ୍ଣ ତାଳପତ୍ର ପୋଥିର ପୃଷ୍ଠା ଓଲଟାଇବା କାଳରେ ଭୁଲକ୍ରମେ ଯଦି ଦୁଇଟି ପତ୍ର ଲେଉଟି ପଡ଼େ, ତେବେ ଗୋଟିଏ ପତ୍ରର ସମସ୍ତ ପାଠ ପରିତ୍ୟକ୍ତ ହୋଇ ଯାଇଥାଏ । ଏପରି ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ସେଥିପାଇଁ ଗ୍ରନ୍ଥର ଶୁଦ୍ଧ ସମ୍ପାଦନା କାଳରେ ସମ୍ପାଦକଙ୍କୁ ଏକାଧିକ ପ୍ରତିଲିପି ସଂଗ୍ରହ କରି ପାଠ ଚୟନ କରିବାକୁ ପଡ଼ିଥାଏ ।

ଏହି ସମସ୍ତ ପାଠ ବିକୃତିଗୁଡ଼ିକ ପୋଥି ମଧ୍ୟରେ ଭିନ୍ନ ଭିନ୍ନ ମାଧ୍ୟମ ଦେଇ ପ୍ରବେଶ କରିଥାଏ । ସେଗୁଡ଼ିକ ହେଉଛି —

୧ - ତାଳପତ୍ର ଉପରେ ଲୌହ ଲେଖନୀ ସାହାଯ୍ୟରେ ଲେଖାଯାଉଥିବାରୁ ବାରମ୍ବାର ଲେଖନୀକୁ ଉଠାଇ ଜୋର ଦେଇ ଲେଖିବା ଦ୍ୱାରା ପତ୍ରଗୁଡ଼ିକ ଫାଟିଯିବାର ଆଶଙ୍କା ଥିବାରୁ ଲେଖନକାର ପଦର ଆରମ୍ଭରେ ଲେଖନୀକୁ ପତ୍ର ଉପରେ ସ୍ପର୍ଶ କରାଇ ପଦ ଶେଷରେ ତାହାକୁ ଉଠାଇଥାଏ । ଫଳରେ ଅକ୍ଷରଗୁଡ଼ିକ ଲଟା ପରି ଛନ୍ଦାଛନ୍ଦି ହୋଇ ଅର୍ଥାତ୍ ଲଗାଲଗି ହୋଇ ଖୋଦେଇ ହେଲା ପରି ଦେଖା ଯାଇଥାନ୍ତି । ତେଣୁ ନକଲକାର ପାଠ ନକଲ କାଳରେ ଶବ୍ଦଗୁଡ଼ିକୁ ଠିକ୍ ଭାବେ ପୃଥକ କରି ପାରି ନଥାଏ ।

୨ - ପୋଥିରେ ଥିବା ମୂଳ ଶବ୍ଦ ଯଦି ନକଲକାରଙ୍କ ଅଞ୍ଚଳରେ ପ୍ରଚଳିତ ହୋଇନଥାଏ, ତେବେ ନକଲକାର ତାହାକୁ ବୁଝି ନପାରି ଶବ୍ଦଗତ ପ୍ରମାଦ ସୃଷ୍ଟି କରିଥାନ୍ତି ।

୩ - ଏକ ପ୍ରକାର ପୋଥି ଭିନ୍ନ ଭିନ୍ନ ଅଞ୍ଚଳରେ ନକଲ ହେବା ଦ୍ୱାରା ମୂଳ ପୋଥିର ଭାଷା ଅଞ୍ଚଳ ଭେଦରେ ପରିବର୍ତ୍ତିତ ହୋଇ ଯାଇଥାଏ ।

୪ - ଶବ୍ଦ ବ୍ରହ୍ମ ଭାବେ ସମାଜରେ ଗୃହୀତ ହେଉଥିବାରୁ ତାହାକୁ ନ କାଟି ସେହି ଅକ୍ଷର ତଳେ କିମ୍ବା ମଧ୍ୟରେ ବିନ୍ଦୁ ଦେଇ ତାହାକୁ ଅଦରକାରୀ ଭାବେ ସଙ୍କେତିତ କରାଯାଇଥାଏ । ମାତ୍ର ନକଲକାର ସେହି ସଙ୍କେତାତ୍ମକ ବିନ୍ଦୁକୁ ଯଦି ଚିହ୍ନି ନପାରେ ତେବେ ପାଠରେ ଅକ୍ଷର ବୃଦ୍ଧି ଘଟିଥାଏ ।

୫ - ଆବଶ୍ୟକ ସ୍ଥଳେ ପୂର୍ଣ୍ଣଚ୍ଛେଦ, ଅନୁସ୍ୱାର, ଚନ୍ଦ୍ର ବିନ୍ଦୁ ନ ଦେବା, ଅନାବଶ୍ୟକ ସ୍ଥଳେ ମନଇଚ୍ଛା ବିରାମ ଚିହ୍ନ ଦେବା, ଚନ୍ଦ୍ରବିନ୍ଦୁ ସ୍ଥାନରେ ଅନୁସ୍ୱାର ଦେବା, ବିସର୍ଗଯୁକ୍ତ ଶବ୍ଦ ଯଥା- ଦୁଃଖ, ଦୁଃଖିତରେ ବିସର୍ଗ ନଦେବା, 'ଏ'ସ୍ଥାନରେ 'ୟେ' କିମ୍ବା 'ଇ'ସ୍ଥାନରେ 'ୟି' ଲେଖିବା ଏବଂ ପଦଶେଷରେ 'ସେ' 'ଯେ' 'ହେ' ପ୍ରଭୃତି ଘୋଷା ବ୍ୟବହାର କରିବା ଦ୍ୱାରା ପାଠର ଔଚିତ୍ୟ ହାନି ଘଟିଥାଏ ।





୬ - ତାଳପତ୍ର ଉପରେ ଲୌହ ଲେଖନୀ ଚଳାଇ ଲେଖିବା ଏକ କଷ୍ଟକର କାର୍ଯ୍ୟ ଥିବାରୁ ଲିଖନକୁ ସହଜ କରିବା ପାଇଁ ଲେଖନକାର ଶ, ଷ, ସ ମଧ୍ୟରେ କୌଣସି ବ୍ୟବହାରଗତ ପାର୍ଥକ୍ୟ ରକ୍ଷା କରି ନଥାଏ । ଖୀ, ଧୀ ପ୍ରଭୃତି ଅକ୍ଷରକୁ ସହଜରେ ଲେଖିବା ପାଇଁ ତଳେ 'ଇ' ଚିହ୍ନ ବ୍ୟବହାର କରିବା ଓ ସଂଯୁକ୍ତ ବର୍ଣ୍ଣଗୁଡ଼ିକୁ ନିଜର ସୁବିଧାନୁଯାୟୀ ସ୍ୱତନ୍ତ୍ର ରୀତିରେ ଲେଖିବା ଦ୍ୱାରା ପାଠ ବିକୃତି ହୋଇଥାଏ ।

୭ - ନକଲକାର ଯଦି କବିତ୍ୱ ସମ୍ପନ୍ନ ବ୍ୟକ୍ତି ହୋଇଥାନ୍ତି, ତେବେ ସେ ପାଠରେ ଅଧିକ ପଦ ଲେଖି ଦେଇଥାନ୍ତି । ଫଳରେ ଅକ୍ଷର ବୃଦ୍ଧି ବା ପଠାଧିକ ବିକୃତି ଦେଖାଦେଇଥାଏ ।

୮ - ସଂସ୍କୃତ ଶ୍ଳୋକଟି ଯଦି କୌଣସି କାରଣରୁ ପୂର୍ଣ ଅନୂଦିତ ହୋଇପାରି ନଥାଏ, ତେବେ ସେହି ଭୁଲଟି ପରବର୍ତ୍ତୀ ପ୍ରତିଲିପିଗୁଡ଼ିକରେ ଲାଗି ରହିଥାଏ ।

୯ - ବିଭିନ୍ନ ସଂପ୍ରଦାୟର ଶିଷ୍ୟମାନଙ୍କ ଦ୍ୱାରା ନକଲ କରାଯାଉଥିବା ପୋଥିରେ ଲେଖକଙ୍କ ନାମ ପରିବର୍ତ୍ତେ ସ୍ୱଗୁରୁମାନଙ୍କର ନାମ ଲେଖି ଦେବା ଦ୍ୱାରା ତାହା ଏକାଧିକ କବିଙ୍କର ଗ୍ରନ୍ଥ ବୋଲି ପ୍ରତିଭାତ ହୋଇଥାଏ ।

୧୦ - ପୁଷ୍ପିକାକୁ ଅବିକଳ ନକଲ କରିବା ଫଳରେ ନକଲ ପୋଥିର କାଳ କଳନାରେ ଭ୍ରମ ଆସିଥାଏ ।

୧୧ - ଅଧ୍ୟାୟମାନଙ୍କରେ ପଦ ସଂଖ୍ୟା ନଥିଲେ ସେହି ପଦଗୁଡ଼ିକ ନକଲକାରଙ୍କର ସ୍ୱେଚ୍ଛାକୃତ ବୋଲି ଅନୁମାନ କରାଯାଇଥାଏ ।

ଏହିସବୁ କାରଣ ଯୋଗେ ପୋଥିରେ ପାଠ ବିକୃତିର ବିଭିନ୍ନ ହେତୁ ଆସିଥାଏ । ସେଥିପ୍ରତି ସଚେତନ ନ ରହିଲେ ସମ୍ପାଦକ ଶୁଦ୍ଧପାଠ ନିର୍ଣ୍ଣୟ କରିବାରେ ସମର୍ଥ ହୋଇପାରେ ନାହିଁ ।

ଉପରେ ଯେତେଗୁଡ଼ିଏ ଲିପିଗତ ବିଭ୍ରାନ୍ତି ସମ୍ପର୍କରେ ଆଲୋଚନା କରାଗଲା, ସେସବୁକୁ ମୁଖ୍ୟତଃ ବାହ୍ୟ ଆଭ୍ୟନ୍ତରଣୀୟ ଭେଦରେ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ବାହ୍ୟକାରଣ ହେଉଛି ମୂଳପୋଥିର ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା । ସାଧାରଣତଃ ପୂର୍ବକାଳରେ ପୋଥିଗୁଡ଼ିକୁ ଦେବତାର ସମ୍ମାନ ଦିଆଯାଉଥିଲା । ଏବେ ମଧ୍ୟ ଓଡ଼ିଶାରେ ଏହି ପୋଥିପୂଜା ପରିଦୃଷ୍ଟ ହୋଇଥାଏ । ଭାଗବତଗାଦିମାନଙ୍କରେ ପୋଥିକୁ ରଖି ସେଥିରେ ପାଣିସିଞ୍ଚି ଫୁଲଚନ୍ଦନ ଦେବା ଫଳରେ ପୋଥିଗୁଡ଼ିକର ପତ୍ର କ୍ରମେ ନଷ୍ଟହୋଇ ଯାଇଥାଏ । ଏହାଛଡ଼ା ବାୟୁରେ ଥିବା ଜଳକଣା ଓ କୀଟ ଆକ୍ରମଣ ଯୋଗୁ ଏ ପ୍ରକାର ଅବସ୍ଥା ମଧ୍ୟ ପୋଥିରେ ଦେଖାଦେଇଥାଏ । ପୋଥି ବହୁଦିନର ହେଲେ ଏବଂ ତାହାକୁ ବିଭିନ୍ନ ରାସାୟନିକ ପଦାର୍ଥ ଦ୍ୱାରା କିମ୍ବା ପ୍ରାଚୀନ ପଦ୍ଧତିରେ ଖରା ନ ଦେଲେ ତାହା ଚଞ୍ଚଳ ନଷ୍ଟ ହୋଇଯାଏ । ପୋଥିପତ୍ରମାନଙ୍କୁ କୀଟକାଟି ଦେବାଫଳରେ ପୋକମାନଙ୍କର ଶରୀରରୁ ନିର୍ଗତ ଅଠା ଲାଗିଯାଇ ପତ୍ରଗୁଡ଼ିକ ପରସ୍ପର ଜଡ଼ିଯାଇଥାନ୍ତି । ତାହା ସହଜରେ ଛାଡ଼ି ନଥାନ୍ତି । ଏଗୁଡ଼ିକୁ ଛଡ଼ାଇବାକୁ ଚେଷ୍ଟାକଲେ ପତ୍ରଗୁଡ଼ିକ ଭାଙ୍ଗିଯାଇ ପାଠ ନଷ୍ଟ ହୋଇଯାଇଥାଏ । ପାକଳ ପତ୍ର ନ ହୋଇଥିଲେ କିମ୍ବା ପତ୍ରକୁ ଭଲଭାବେ ପାଗକରି ରଖି ନଥିଲେ ପତ୍ରଗୁଡ଼ିକ ମଧ୍ୟ ଖୁବ୍ ଶୀଘ୍ର ନଷ୍ଟ ହୋଇଯାଇଥାଏ । ଦେଖାଯାଇଥାଏ ଯେ କିଛିଦିନ ପରେ ପତ୍ରଗୁଡ଼ିକ ଗୁଣ୍ଡ ହୋଇଯାଉଛନ୍ତି । କୀଟଦ୍ରଷ୍ଟ ବ୍ୟତୀତ ପ୍ରାକୃତିକ ବିପ୍ଲାତ ମଧ୍ୟ ପୋଥି ନଷ୍ଟର ଅନ୍ୟ ଏକ ମୁଖ୍ୟ କାରଣ । ସାଧାରଣତଃ ଧୋଇଆ ଅଞ୍ଚଳରେ ବନ୍ୟାପାଣି ଘର ମଧ୍ୟରେ ପ୍ରବେଶକରି ଦୀର୍ଘଦିନ ରହିବା ଫଳରେ ପୋଥିଗୁଡ଼ିକ ପାଣିରେ ବୁଡ଼ି ରହିଥାଏ । ଦୀର୍ଘଦିନ ଏହିଭଳି ଯଦି ଓଦା ହୋଇ ପୋଥି ଗୁଡ଼ିକ ରହେ ତେବେ ପୋଥିର ଆୟୁଷ କମିଯାଏ । ସେହିପରି ଆକସ୍ମିକ ଗୃହ ଦାହ ମଧ୍ୟ ପୋଥି ନଷ୍ଟର ଅନ୍ୟ ଏକ କାରଣ । ମୂଷା ଅସରପାମାନେ



ପୋଥିର ପତ୍ରକୁ କାଟି ପକାଇଥାନ୍ତି । ଅସରପା ଲଣ୍ଡି ପୋଥି ପତ୍ରରେ ଲାଗିଯିବା ଫଳରେ ପୋଥିର ଅକ୍ଷର ଅସ୍ପଷ୍ଟ ହେବା ସଙ୍ଗେ ସଙ୍ଗେ ଏକ ପ୍ରକାର ଅଠାଦ୍ୱାରା ପତ୍ରଗୁଡ଼ିକ ଲଢ଼ିଯାଇଥାନ୍ତି । ଏହିଭଳି ଅନେକ ବାହ୍ୟକାରଣ ଯୋଗୁ ପୋଥିଗୁଡ଼ିକ ନଷ୍ଟହୋଇ ପାଠ ବିକୃତି ଘଟିଥାଏ ।

ପୋଥିର ପାଠ ବିକୃତିର ଆଭ୍ୟନ୍ତରୀୟ କାରଣକୁ ଇଚ୍ଛାକୃତ ଓ ଅନିଚ୍ଛାକୃତ ଭାବେ ଦ୍ୱିଧା ବିଭକ୍ତ କରାଯାଇଥାଏ । ଇଚ୍ଛାକୃତ କାରଣ ହେଉଛି ନକଲକାରଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ ନିମିତ୍ତ ଶବ୍ଦ ଓ ପଦ ପ୍ରକ୍ଷେପ, ପଦ ଓ ଶବ୍ଦ ସଂସ୍ଥାନ ଏବଂ ପଦ ବା ବାକ୍ୟ ପରିବର୍ତ୍ତନ । ପୋଥିର ମୂଳଶବ୍ଦ ବା ପଦକୁ ବୁଝି ନପାରିଲେ ମଧ୍ୟ ନକଲକାର ଇଚ୍ଛାକୃତଭାବେ ଶବ୍ଦ, ପଦ ଓ ବାକ୍ୟକୁ ପରିବର୍ତ୍ତନ କରିଦେଇଥାନ୍ତି । ଅନିଚ୍ଛାକୃତ କାରଣ ମଧ୍ୟରେ ଦୃଷ୍ଟି ଓ ଶ୍ରବଣ ଦୋଷ ଏବଂ ଭାବାତିଶୟତାକୁ ଉଲ୍ଲେଖ କରାଯାଇ ପାରେ । ପୂର୍ବରୁ ଏହିସବୁ କାରଣ ଗୁଡ଼ିକ ବିଶେଷ ଭାବେ ଦୃଷ୍ଟାନ୍ତ ସହିତ ଆଲୋଚନା କରାଯାଇଛି ।

ଏହିପରି ନାନାବିଧ କାରଣରୁ ପୋଥି ପାଠ ବିକୃତ ହୋଇ ଯାଇଥାଏ ଓ ଚତୁର ଲିପିକାରଗଣ ଅନେକ ସମୟରେ ତାହାକୁ ସଂଶୋଧନ କରିବାକୁ ଚେଷ୍ଟା କରିବାରୁ ପାଠର ଅଶୁଦ୍ଧି ଆସିଥାଏ । ପାଠର ଏହି ବିକୃତ ବା ଅଶୁଦ୍ଧି ସମ୍ପର୍କରେ ନକଲକାରଗଣ ମଧ୍ୟ ପୋଥିର ପୁଷ୍ପିକାରେ ସୂଚନା ଦେଇଥାନ୍ତି ଓ ଅଶୁଦ୍ଧ ପାଠକୁ ଶୁଦ୍ଧଭାବେ ପାଠକରିବା ପାଇଁ ପାଠକମାନଙ୍କୁ ନିବେଦନ କରିଥାନ୍ତି ଯଥା—

> ବିଦୁଷାମୁପକାରାୟମୟା ଲିଖିତଂ ପୁସ୍ତକମ୍
> ନ୍ୟୁନାଧିକଂଚାତ୍ର ଯଚ୍ଚ ଶୋଧୟନ୍ତୁ ବିବେକିନଃ ।
> × × ×
> ଭୀମସ୍ୟାପି ରଣେଭଙ୍ଗଃ ମୁନେରପି ମତିଭ୍ରମଃ
> ଯଦି ଶୁଦ୍ଧମଶୁଦ୍ଧ ବା ମମ ଦୋଷୋ ନ ବିଦ୍ୟତେ ।

ଏହାଛଡ଼ା ନକଲକାର ପୋଥିକୁ ପୁତ୍ରବତ୍ ଯତ୍ନର ସହିତ ସଂରକ୍ଷଣ କରିବା ପାଇଁ ପାଠକମାନଙ୍କୁ ମଧ୍ୟ ଅନୁରୋଧ କରିଥାଏ ଓ ନିଜର ବୟସାଧିକ୍ୟ ତଥା ଅମାପ ଶ୍ରମର ସୂଚନା ଦେଇଥାଏ । ଯଥା —

> ଭଗ୍ନଦୃଷ୍ଟ କଟୀଗ୍ରୀବଃ ତୁଲ୍ୟଦୃଷ୍ଟିରଧୋମୁଖଃ
> ଦୁଃଖେନ ଲିଖିତଂଗ୍ରନ୍ଥ ପୁତ୍ରବତ୍ ପରିପାଳୟେତ୍ ।

ଏହିସବୁ କାରଣରୁ ବିଚାରକଲେ ପୋଥିଗୁଡ଼ିକର ପାଠରେ ଅନେକ ବିଭ୍ରାନ୍ତି ଆସିବା ସ୍ୱାଭାବିକ ମନେହୁଏ ଏବଂ ଗ୍ରନ୍ଥ ମଧ୍ୟରୁ ଏହିସବୁ ବିଭ୍ରାନ୍ତିକୁ ବିଦୂରିତ କରିବା ନିମନ୍ତେ ଗ୍ରନ୍ଥର ସମ୍ପାଦନା କରାଯାଇଥାଏ । ଗ୍ରନ୍ଥ ସମ୍ପାଦନକାଳରେ ସମ୍ପାଦକ ଏକମାତ୍ର ପୋଥିକୁ ଅବଲମ୍ବନ କରି ଶୁଦ୍ଧପାଠ ନିର୍ଣ୍ଣୟ କରିବା ଉଚିତ ନୁହେଁ, କାରଣ ଏକମାତ୍ର ପୋଥିରୁ ସମ୍ପାଦକ ଉପଯୁକ୍ତ ବିଭ୍ରାନ୍ତି ଗୁଡ଼ିକୁ ବାଛିପାରି ନଥାଏ । ତେଣୁ ସମ୍ପାଦକଙ୍କୁ ପୋଥିର ଏକାଧିକ ପ୍ରତିଲିପି ସଂଗ୍ରହ କରିବାକୁ ପଡ଼ିଥାଏ ।



---

✱ ପ୍ରାଚୀନ ପୋଥି ଶୁଦ୍ଧସମ୍ପାଦନା ପଦ୍ଧତି ଓ ଅନୁବାଦ କୌଶଳ (୧୯୮୮) ।









# ଶୁଦ୍ଧ ପାଠ-ନିର୍ଣ୍ଣୟ ସମସ୍ୟା : ପ୍ରାମାଣିକ ସାରଳା ମହାଭାରତ

ପ୍ରଫେସର କୃଷ୍ଣଚରଣ ସାହୁ

ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ସାରଳା ଦାସଙ୍କ ରଚିତ ମହାଭାରତର ସଂପାଦିତ ସଂସ୍କରଣ ପାଇଛି । ଏଠାରେ ମୁଖ୍ୟ ସଂକଳନ, ସଂଗ୍ରାହକ ଓ ସଂପାଦକ ଡ଼କ୍‌ଟର ଆର୍ତ୍ତବଲ୍ଲଭ ମହାନ୍ତି । ଆଦି ପର୍ବରେ କୌଣସି ସୂଚନା ନଥିଲେ ହେଁ ପରବର୍ତ୍ତୀ ପର୍ବ ସବୁର ପାଠାନ୍ତର ନିର୍ଦ୍ଦେଶରୁ ଜଣାଯାଏ, ଏହି ସଂପାଦନାରେ କ ଠାରୁ କ୍ଷ ସଂଖ୍ୟକ ପୋଥି ବ୍ୟବହୃତ ହୋଇଛି (ଅବତରଣିକାରେ ଭାରପ୍ରାପ୍ତ ସଂପାଦକ ସର୍ବମୋଟ ପ୍ରାୟ ୨୨ଖଣ୍ଡ ପୋଥି ସଂଗୃହୀତ ହୋଇଥିବାର ହିସାବ ଦିଅନ୍ତି) । ଓଡ଼ିଆ ସାହିତ୍ୟର ଆଦିକାଳରେ ସାରଳା ମହାଭାରତ କେବଳ ଆକାର ଦୃଷ୍ଟିରୁ ନୁହେଁ, ଧର୍ମ, ସଂସ୍କୃତି ଓ ଭାଷା ଦୃଷ୍ଟିରୁ ବହୁ ମହତ୍ତ୍ୱପୂର୍ଣ୍ଣ । ସେଥିପାଇଁ ଏହାର ସଂପାଦନା ଓଡ଼ିଆ ସାହିତ୍ୟରେ ଯେ ଏକ ମହାନ୍ କାର୍ଯ୍ୟ ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ।

ଓଡ଼ିଆ ସାହିତ୍ୟରେ ଶୁଦ୍ଧ ପାଠ ବା ଶୁଦ୍ଧ ସଂସ୍କରଣର ପ୍ରଥମ ପ୍ରବର୍ତ୍ତକ ହେଉଛନ୍ତି ଅଧ୍ୟାପକ ଆର୍ତ୍ତବଲ୍ଲଭ । ବ୍ୟକ୍ତିଗତ ଚେଷ୍ଟାରେ ଓ ପ୍ରାଚୀ ସମିତି ଜରିଆରେ ସେ ବହୁ ପ୍ରାଚୀନ ଗ୍ରନ୍ଥର ଶୁଦ୍ଧ ପାଠ ନିର୍ଣ୍ଣୟ କରିଛନ୍ତି । ସାରଳା ମହାଭାରତ ସଂପାଦନା ତାଙ୍କ କର୍ମମୟ ଜୀବନର ଶେଷ ଅବଦାନ । ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେ ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ । ସାରଳା ମହାଭାରତ ସଂପାଦନା ପାଇଁ ଯେଉଁ ପାଣ୍ଡିତ୍ୟ, ଦକ୍ଷତା, ଅନୁଭୂତି ଆବଶ୍ୟକ ଥିଲା, ତାହା ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ବ୍ୟତୀତ ଆଉ କାହାରି ଥିଲା ପରି ମନେ ହୁଏ ନାହିଁ । ସେ ଥିଲେ ସାରଳା ଦାସଙ୍କ ମହାଭାରତର ମର୍ମଜ୍ଞ ପାଠକ ତଥା ଆଲୋଚକ । ପ୍ରାଚୀନ ଶବ୍ଦାବଳୀ ଓ ସେ ସବୁର ପ୍ରୟୋଗ ସହ ସେ ଯେତେ ପରିଚିତ ଥିଲେ, ସେ ସବୁ ପ୍ରତି ତାଙ୍କର ଯେଉଁ ଆତ୍ମୀୟତା ଥିଲା, ତାହା କେବଳ ତାଙ୍କରି ପକ୍ଷେ ସମ୍ଭବ ଥିଲା । ଏ ସବୁ ସତ୍ତ୍ୱେ ସାରଳା ମହାଭାରତ ସଂପାଦନାରେ ଅସାବଧାନତାଜନିତ ବହୁ ପ୍ରମାଦ ପରିଦୃଷ୍ଟ ହୁଏ । ନିମ୍ନରେ କେତୋଟି ଦୃଷ୍ଟାନ୍ତ ଦିଆଯାଉଛି ।

ଶୁଦ୍ଧ ସଂସ୍କରଣର ପ୍ରଥମ ନିୟମ ହେଉଛି, ବ୍ୟବହୃତ ବିଭିନ୍ନ ପୋଥିର ପରିଚୟ । ସମ୍ପାଦକ ସବୁ ପୋଥିକୁ ସମାନ ଆଦର ଦେଲେହେଁ ସଂଗୃହୀତ ପୋଥି ସବୁର ପରିବାର ନିର୍ଣ୍ଣୟ କରି ସେଥି ମଧ୍ୟରୁ ଗୋଟିଏ ଆଦର୍ଶ ପୋଥି ନିର୍ବାଚନ କରନ୍ତି । ସେ ହୁଏ (କ) ପୋଥି । ତା'ପରେ ଅନ୍ୟ ପରିବାରର ପୋଥି ସବୁ ଖ, ଗ, କ୍ରମରେ ନାମିତ ହୁଏ । ଶୁଦ୍ଧ ପାଠ ଗ୍ରହଣ କରିନେବା ପରେ ଅନ୍ୟ ସମ୍ଭାବିତ ପାଠ ଏପରିକି ଅପପାଠ ସବୁକୁ ନିମ୍ନରେ ନିର୍ଦ୍ଦେଶ କରିବା ସାଧାରଣ ବିଧି । କିନ୍ତୁ ଓଡ଼ିଆ ପୁରାଣ ସମ୍ପାଦନାରେ ଏହି ନିୟମ ଅନୁସରଣ କରିବାରେ ଅସୁବିଧା ଅଛି । ପ୍ରତ୍ୟେକ ପୋଥି ଅନ୍ୟ ପୋଥିଠାରୁ ଭିନ୍ନ ପାଠ ହେଉଥିବାରୁ ଗ୍ରନ୍ଥର କଳେବର ବହୁଗୁଣିତ ହୋଇଥାଏ । ଉଦାହରଣ ସ୍ୱରୂପ ୨୬ଟି ପୋଥିରୁ ପାଠ ଗ୍ରହଣ କଲେ ପ୍ରତ୍ୟେକ ପୋଥିର ପାଠ ପ୍ରତ୍ୟେକ ପଙ୍‌କ୍ତିରେ ରହିଯାଏ । ସେଥିପାଇଁ, ବିଜ୍ଞାନସମ୍ମତ ନହେଲେ ବି, କେବଳ ଅନ୍ୟାନ୍ୟ ସମ୍ଭାବିତ ପାଠ ଦେଲେ ବିଶେଷ ଅସୁବିଧା ହୁଏ ନାହିଁ । ପୋଥିର ପରିବାର ନିର୍ଣ୍ଣୟ କରିପାରିଲେ ଏହି କାର୍ଯ୍ୟ ଆହୁରି ସୁଗମ ହୁଏ । ପ୍ରକାଶିତ ମହାଭାରତର ସମ୍ପାଦନାରେ ବିଶେଷ କରି ଆଦିପର୍ବରେ, ଏଥିରୁ କୌଣସିଟି ଗୃହୀତ ହୋଇଥିବା ପରି ମନେହୁଏ ନାହିଁ । ନିମ୍ନରେ ଅନ୍ୟ ପାଠ ଥିଲେ ହେଁ ଏହା ଯେ କୌଣସି ଗୋଟିଏ ପୋଥିର ପାଠ ତାହା ନିର୍ଦ୍ଦେଶିତ ହୋଇ ନାହିଁ । କୌଣସି କୌଣସି ସ୍ଥାନରେ କେତେକ ପୋଥିର ଅଧିକ ପାଠ ଲେଖା ଅଛି । ପୁଣି କେତେକ ସ୍ଥାନରେ







ପଦ ଶେଷରେ ବନ୍ଧନୀ ମଧ୍ୟରେ (ପା) ଲେଖା ଅଛି ଏବଂ ବନ୍ଧନୀ ମଧ୍ୟରେ 'ପାଣ୍ଡୁଲିପି' ଲେଖା ଅଛି । ଏ ସଂକେତ କାହିଁକି ଦିଆଗଲା ସେ କଥା ସମ୍ପାଦକ କୌଣସି ସ୍ଥାନରେ ସ୍ପଷ୍ଟ ଭାବେ କହିନାହାନ୍ତି । ପରବର୍ତ୍ତୀ ପର୍ବମାନଙ୍କରେ କ, ଠାରୁ କ୍ଷ ପୋଥି ପର୍ଯ୍ୟନ୍ତ ପାଠ ଦିଆଯାଇଛି । ଏବଂ ବନ୍ଧନୀ ମଧ୍ୟରେ ପାଣ୍ଡୁଲିପି । କିନ୍ତୁ ଏ ସବୁ କୌଣସି ନିର୍ଦ୍ଦିଷ୍ଟ ନିୟମକୁ ଅନୁସରଣ କରୁନାହିଁ । ସବୁଠାରୁ କ୍ଷୋଭ ଏବଂ ପରିତାପର ବିଷୟ ହେଉଛି ସମ୍ପାଦନାରେ ବ୍ୟବହୃତ ହୋଇଥିବା ପାଣ୍ଡୁଲିପି ସବୁ ଉତ୍କଳ ବିଶ୍ୱବିଦ୍ୟାଳୟ ଓ ରାଜ୍ୟ ସଂଗ୍ରହାଳୟକୁ ଯେଉଁ ଭାବରେ ଫେରାଇ ଦିଆଯାଇଛି, ସେଥିରୁ ମହାଭାରତ ଗୃହୀତ ପାଠର ସମୀକ୍ଷା କରିବା ସମ୍ଭବ ନୁହେଁ । ସେଥିପାଇଁ ନିମ୍ନ ଆଲୋଚନାରେ ଶୁଦ୍ଧ ପାଠର ଅତି ନିକଟବର୍ତ୍ତୀ ମୂଳୁଗାଁ ଗ୍ରାମରୁ ସଂଗୃହୀତ ପୋଥିର ସାହାଯ୍ୟ ନିଆଯାଇଛି ।

ସମ୍ପାଦିତ ସାରଳା ମହାଭାରତର ଶୁଦ୍ଧପାଠ ଓ ନିମ୍ନରେ ପ୍ରଦତ୍ତ ସମ୍ଭାବିତ ପାଠକୁ ତୁଳନାକଲେ ଅନେକ ସମୟରେ ଶୁଦ୍ଧପାଠ ଅପେକ୍ଷା ନିମ୍ନ ପ୍ରଦତ୍ତ ପାଠ ହିଁ ଉତ୍କୃଷ୍ଟ ଜଣାଯାଏ । ଉଦାହରଣ ପାଇଁ କେତୋଟି ପଙ୍‌କ୍ତି ପରୀକ୍ଷା କରାଯାଇପାରେ ।

୧। ଶୁଦ୍ଧପାଠରେ ଅଛି

ଶାୟେଂତନୁର ଭାରିଯା ହୁଅସି ଗୋ ମାତ ।

ମୂଳୁଗାଁ ପୋଥିର ପାଠ :

ଈଶ୍ୱରଙ୍କ ଭାରିଯା ଗୋ ହୋଇଲୁ ଜଗତମାତ

ବହୁ ପୋଥିରେ, 'ଶାୟେଂତନୁ' ଥିବାବେଳେ ବହୁ ପୋଥିରେ 'ଈଶ୍ୱର' ଶବ୍ଦ ଅଛି । ପୋଥିରେ ଥିବା ଏହି ପାର୍ଥକ୍ୟକୁ ସଂପାଦକ ପ୍ରସଙ୍ଗ ଦୃଷ୍ଟିରୁ ବିଚାର କରି ଶୁଦ୍ଧପାଠ ନିର୍ଣ୍ଣୟ କରିବାର କଥା । ଏଠି କଥା ହେଉଛି, ଶିବ ଶାନ୍ତନୁଙ୍କ ଉପରେ ସନ୍ତୁଷ୍ଟ ହୋଇ ତା'ଙ୍କୁ ଦ୍ୱିତୀୟ ଈଶ୍ୱର ପଦ ପ୍ରଦାନ କଲେ । ରୁଦ୍ର ଅବତାର ଶାନ୍ତନୁ ରୁଦ୍ରଙ୍କ ବେଶ, ବାହନ ଓ ଆୟୁଧ ଗ୍ରହଣ କରି ସ୍ୱର୍ଗ, ମର୍ତ୍ତ୍ୟ ବୁଲୁ ବୁଲୁ ନିର୍ଘାତଙ୍କ ରାଜ୍ୟରେ ପ୍ରବେଶ କଲେ । ସେତେବେଳେ ଶାନ୍ତନୁଙ୍କୁ ସେ ଶିବ ବୋଲି ଭାବିଥିଲେ । ତେଣୁ ଗଙ୍ଗାଙ୍କର ସମ୍ମତି ଜାଣିବା ପାଇଁ ସେ ପ୍ରସ୍ତାବ କଲେ, 'ଈଶ୍ୱରଙ୍କ ଭାରିଯା ତୁ ହୁଅସି ଗୋ ମାତ ।' ଗଙ୍ଗା ଏହି ପ୍ରସ୍ତାବରେ ରାଜି ହେଲେ । ବିବାହର ଆୟୋଜନ ହେଲା । ବିବାହ ବେଳେ ବରର କୁଳ ଗୋତ୍ର ଶୁଣି ଗଙ୍ଗା ଶାନ୍ତନୁଙ୍କୁ ବିଭା ହେବା ପାଇଁ ମନା କଲେ । କାରଣ ଶିବଙ୍କର କୁଳ ଗୋତ୍ର ନାହିଁ । କିନ୍ତୁ ପିତାଙ୍କ ଅନୁରୋଧ ଓ ପୂର୍ବ ପ୍ରତିଜ୍ଞାକୁ ସ୍ମରଣ କରି ସେ ଶେଷରେ ଶାନ୍ତନୁଙ୍କୁ ବିବାହ କଲେ । ପ୍ରଥମେ ଶାନ୍ତନୁଙ୍କୁ ବିଭା ହେବାପାଇଁ ରାଜି ହୋଇଥିଲେ ବିବାହ କାଳରେ ମନା କରିବା ପାଇଁ ଅବକାଶ ମିଳନ୍ତା କେଉଁଠୁ ? ତେଣୁ ଏ ସ୍ଥଳରେ 'ଈଶ୍ୱରଙ୍କ ଭାରିଯା ତୁ ହୁଅସି ଗୋ ମାତ' ଅର୍ଥାତ୍ ପାଦଟୀକାରେ ଥିବା ପାଠ ହିଁ ଗ୍ରହଣୀୟ ।

୨। ଶୁଦ୍ଧପାଠରେ ଅଛି :

ଅନେକ ଅଭାବ ବୋଲି ବୋଇଲା ମହାସତୀ<br>
ଋଷିଙ୍କର ତୁଲେ ସେ ବଢ଼ାଇଲା ପୀରତୀ ।

ନିମ୍ନରେ ଥିବା ପାଠାନ୍ତର :

ଅନେକ ଭାବେଣ ଯେ ବୋଲନ୍ତି ମହାସତୀ ।

ମୂଳୁଗାଁ ପୋଥିର ପାଠ :

ଅନେକ ଭାବେଣ ବୋଲଇ ମହାସତୀ,

'ଅଭାବ' ବୋଲି କହି ଋଷିଙ୍କ ତୁଲେ ପ୍ରୀତି ବଢ଼ାଇବା ସମ୍ଭବ କି ? ପ୍ରସଙ୍ଗ ଦୃଷ୍ଟିରୁ ମଧ୍ୟ ବିଚାର କଲେ 'ଅଭାବ ବୋଲି' ଅପେକ୍ଷା 'ଭାବେଣ ଯେ ବୋଲନ୍ତି' ଅଧିକ ସଂଗତ । କାରଣ ଏହାର ଠିକ୍ ପରବର୍ତ୍ତୀ ପଙ୍‌କ୍ତିରେ ଅଛି ।

କହଇ ଅନେକ ଚାଟୁ ପଟଳେ<br>
ଆବୋରି ବସିଲେ ଯାଇ ଋଷିଙ୍କର କୋଳେ ।

'ଅଭାବ ବୋଲି' ସହ ଏହାର କୌଣସି ସମ୍ପର୍କ ପ୍ରତିଷ୍ଠିତ ହୁଏ ନାହିଁ ।

୩। ଶୁଦ୍ଧପାଠରେ ଅଛି :

ଦ୍ରୋହ ଲଗାଇ ବଞ୍ଚିଲେ ତୁମ୍ଭର ବଚନ ।

(ପୃ-୨୯)







ନିମ୍ନ ପାଠାନ୍ତର :

ଦ୍ରୋହ ଲଗାଇ ମେଣ୍ଟିଲେ ତୁମ୍ଭର ବଚନ ।

'ବଞ୍ଚିଲେ' ସ୍ଥଳରେ 'ମେଣ୍ଟିଲେ' ଓ ଅନ୍ୟ ପୋଥିରେ 'ଲଘିଲେ' ଅଛି । ଏ ସବୁ ଏକ ଶବ୍ଦର ବିଭିନ୍ନ ରୂପ । ପୋଥି ନକଲକାର ଏପରି ପର୍ଯ୍ୟାୟବାଚୀ ଶବ୍ଦ ସବୁ ସାଧାରଣତଃ ପ୍ରୟୋଗ କରିଥା'ନ୍ତି । (ଲାଗଣ = ଭରିଣ, ଅନ୍ତେଶ୍ୱରପୁରୀ = ଅନ୍ତପୁରୀ, ଭରି= ପୁରାଇ, ଅନଳ = ହୁତାଶନ - ପୃ - ୨୭ ଆଦିପର୍ବ) । କିନ୍ତୁ 'ଲଗାଇ' ଅପେକ୍ଷା 'ଲାଗଇ' ଶବ୍ଦ ଏଠି ପ୍ରସଙ୍ଗୋଚିତ ଓ ଅର୍ଥକୁ ମଧ୍ୟ ସ୍ପଷ୍ଟ କରେ । ଏହିପରି ଅନ୍ୟାନ୍ୟ ବହୁ ପ୍ରସଙ୍ଗରେ ଅପକୃଷ୍ଟ ଓ ଅର୍ଥହୀନ ପାଠକୁ ଶୁଦ୍ଧପାଠ ରୂପେ ଗ୍ରହଣ କରାଯାଇ ଉତ୍‌କୃଷ୍ଟ ପାଠକୁ ପରିତ୍ୟାଗ କରାଯାଇଛି ।

ବହୁ ସ୍ଥଳରେ କୌଣସି କୌଣସି ପଙ୍‌କ୍ତିର ପୁନରାବୃତ୍ତି ପରିଲକ୍ଷିତ ହୁଏ । ସମ୍ପାଦକ ପାଠ ଗ୍ରହଣ କଲାବେଳେ ଯେତିକି ସାବଧାନତା ଆବଶ୍ୟକ ଥିଲା ତାହା ନ କରି କେବଳ ଗୋଟିଏ ପୋଥିକୁ ଅନୁସରଣ କରିଥିବା ପରି ମନେହୁଏ । ପୁନରାବୃତ୍ତିର କେତୋଟି ଉଦାହରଣ ଦେଖିଲେ ଏହା ସ୍ପଷ୍ଟ ହେବ ।

(୧) ଗଙ୍ଗାଙ୍କର ତୁଲେ ସେ ବଢ଼ାଇଲା ପୀରତି
ଦିବା ରାତ୍ରେ ରମଣେଣ ହୋଅନ୍ତି ଅଶାନ୍ତି ।
ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି
ଦିବା ରାତ୍ର ରମନ୍ତି ଯେ ହୋଇଣ ଅଶାନ୍ତି । ୯୯।
(ପୃଷ୍ଠା ୨୬)

ନକଲକାର ନକଲ କଲାବେଳେ 'ବଢ଼ାଇଲା ପୀରତି'କୁ ଦୁଇଥର ପଢ଼ି ଏହାର ପରବର୍ତ୍ତି ସ୍ଥାନରେ ଲେଖି ଦେଇଛନ୍ତି । ସମ୍ପାଦକ ଅନ୍ୟ ପୋଥି ଯତ୍ନ ସହକାରେ ତୁଳନା କରିଥିଲେ ଏହି ପୁନରାବୃତ୍ତିକୁ ଲକ୍ଷ୍ୟ କରି ପାରିଥା'ନ୍ତେ ।

ଏ କଥା ସ୍ପଷ୍ଟ ଯେ ଶାନ୍ତନୁ ଗଙ୍ଗାଙ୍କ ପରାମର୍ଶରେ ଏକାଦଶୀ-ବ୍ରତ ପରିତ୍ୟାଗ କରି ଗଙ୍ଗାଙ୍କ କାମନା ପୂର୍ଣ୍ଣ କରିଥିଲେ । ଏ ଘଟଣା ଘଟି ସାରିବା ପରେ, ପୁଣି ଅନେକମତେ ଚାଟୁପଟଳେ କହି, ଗଙ୍ଗାଙ୍କର କୋଳେ ଆବୋରି ବସି, ତାଙ୍କୁ ବିବସନ କରି ରତିକ୍ରୀଡ଼ା ପାଇଁ ପ୍ରଲୋଭିତ କରିବା ପ୍ରଭୃତି ବର୍ଣ୍ଣନାର ଆବଶ୍ୟକତା ନାହିଁ । ତେଣୁ ଦେଖାଯାଉଛି, ଶୁଦ୍ଧ ପାଠ ଗ୍ରହଣ କଲାବେଳେ ସମ୍ପାଦକ ଗୋଟିଏ ପଦକୁ ଦୁଇଥର ଗ୍ରହଣ କରିଛନ୍ତି । ମୂଳଗାଁ ପୋଥି ଏବଂ ଅନ୍ୟାନ୍ୟ ବହୁ ପୋଥିରେ ଏହି ପୁନରାବୃତ୍ତି ଦେଖିବାକୁ ମିଳେ ନାହିଁ । ମୂଳଗାଁ ପୋଥିରେ ଏହି ପ୍ରସଙ୍ଗ ନିମ୍ନ ଭାବରେ ବର୍ଣ୍ଣିତ :

ଅନେକ ଭାବେଣ ଯେ ବୋଲଇ ମହାସତୀ
ଗଙ୍ଗାଙ୍କର ତୁଲେ ସେ ବଢ଼ାଇଲା ପୀରତି ।
କହଇ ଅନେକମତେ ଚାଟୁ ପଟଳେ
ଆବରି ବସିଲା ଯାଇ ଗଙ୍ଗାଙ୍କର କୋଳେ ।

ଅର୍ଥାତ୍ ୯୪ ରୁ ୯୯ ପଦ ମଧ୍ୟରେ 'ବଢ଼ାଇଲା ପୀରତି' ଦୁଇଥର ଆସିଥିଲେ ହେଁ 'ଦିବାରାତ୍ର ରମନ୍ତି ସେ ହୋଇଣ ଅଶାନ୍ତି'ର ପୁନରାବୃତ୍ତି ହୋଇନାହିଁ । ତେଣୁ ୯୫ ପଦଟି ଅନାବଶ୍ୟକ ଭାବେ ଶୁଦ୍ଧ ପାଠର ସମ୍ପାଦକ ନିଜର ଅସାବଧାନତା ଯୋଗୁଁ ଗ୍ରହଣ କରିଛନ୍ତି ।

(୨) ଅନେକ ଦୋଷ କଲେ କୋପ ନ କରିବୁ ।
ଦଶ ଦୋଷ କଲେ ଅପ୍ରାଧ ନ ଧରିବୁ ।

'ଅନେକ ଦୋଷ' କହି ସାରିବା ପରେ ପୁଣି 'ଦଶ ଦୋଷ' ନ ଧରିବା ପାଇଁ ଅନୁରୋଧ କରିବା ଗୋଟିଏ ଉକ୍ତିର ପୁନରାବୃତ୍ତି ମାତ୍ର । ସମାଜରେ ବିବାହ ସମୟରେ ଦଶ ଦୋଷ କ୍ଷମା କରିବା କଥା ପ୍ରଚଳିତ ଥିବାରୁ କୌଣସି ଅନୁଲେଖକ ବର୍ଣ୍ଣନାକୁ ଆହୁରି ସ୍ପଷ୍ଟ କରିବା ପାଇଁ ଏବଂ ସମାଜର ଚଳଣି ସହ ଖାପ ଖୁଆଇବା ପାଇଁ ଏ ପଦଟିର ଯୋଜନା କରିଛନ୍ତି । ପରେ ଅନ୍ୟ ଅନୁଲେଖକମାନେ ଏହାର ପୁନରାବୃତ୍ତି ଦୋଷକୁ ବାରି ନପାରି ଏହି ପଙ୍‌କ୍ତିଟିକୁ ଗ୍ରହଣ କରିଛନ୍ତି ।

ମୂଳଗାଁ ପୋଥିରେ ଏହା ହେଉଛି :
ଅନେକ.........
ଭସନା ନ ବୋଲିବୁ ମୋତେ ଗାଳି ନ ଦେବୁ ।







୫୯ ପଦ ଓ ୬୦ ପଦର ଦ୍ୱିତୀୟ ପାଦ ମୂଳୁଗାଁ ପୋଥିରେ ନାହିଁ। ଆଉ କେତେକ ପୋଥିରେ ଦୁଇଟିଯାକ ପାଦ ଥିଲେ ହେଁ 'ଦଶ ଦୋଷ' କଥା ନାହିଁ। ତେଣୁ ଏହା ଯେ ପରବର୍ତ୍ତୀ ପ୍ରକ୍ଷେପ ଏହା ହିଁ ଜଣାଯାଏ।

(୩) ପାରେଶ୍ୱର ଓ ସତ୍ୟବତୀ ପ୍ରସଙ୍ଗରେ ଅନ୍ୟ ଗୋଟିଏ ପୁନରାବୃତ୍ତିର ଦୃଷ୍ଟାନ୍ତ ଦେଖିବାକୁ ମିଳେ। ସତ୍ୟବତୀ କ୍ରମାନ୍ୱୟରେ ତିନୋଟି ଅଭିଯୋଗ କରିଥିଲେ। ଦିବସେ ଶୃଙ୍ଗାର, ଦୁଇପଟେ ଲୋକ ଗହଳି ଓ ଅଗାଧ ଜଳ ମଧ୍ୟରେ ଧର୍ମ ନୌକା। ସୂର୍ଯ୍ୟ ନଦେଖିବା ପାଇଁ ପାରେଶ୍ୱର ଧୋତି ଦ୍ୱାରା ସୂର୍ଯ୍ୟଙ୍କୁ ଲୁଚାଇଲେ। ଚାରିପଟେ କୁହୁଡ଼ି ଆଚ୍ଛାଦନ କରି ଲୋକଦୃଷ୍ଟିରୁ ନୌକାକୁ ଲୁକ୍କାୟିତ କରିଦେଲେ। କାମବଶରେ ବଶୀଭୂତ ହୋଇ ମୁନି ଅବାଟକୁ ବାଟ କଲେ। ଧର୍ମ ଛାଡ଼ିଲେ। ସେ ଦିନ ମେଷ ମାସ, ଶୁକ୍ଳପକ୍ଷ, ତୃତୀୟା। ଏହି ଘଟଣା ବର୍ଣ୍ଣନା କଲାବେଳେ ଦିବସେ ରତିର ଗୋଟିଏ ପଦ କହୁଁ କହୁଁ ସତ୍ୟବତୀଙ୍କୁ ଗ୍ରହଣ କରି ପରେ ଦିବସେ ଶୃଙ୍ଗାରର ଅନ୍ୟାନ୍ୟ ଅଭିଯୋଗକୁ ଉପସ୍ଥାପନା କରିବା ଅପ୍ରାସଙ୍ଗିକ ବୋଧହୁଏ। ପୂର୍ଣ୍ଣ ଉଦାହରଣଟି ଦେଲେ ଏହା ସ୍ପଷ୍ଟ ହେବ।

ସତ୍ୟବତୀ ବୋଇଲେ ତୁମ୍ଭେ ଶୁଣ ପାରେଶ୍ୱର
ଆକାଶେଣ ଉଦିତ ହାଦେ ଦେଖ କରତାର। ୭୪।
ଦିବସେ ଶୃଙ୍ଗାର କରନ୍ତେ ବଡ଼ ଦୋଷ
ଶିରଚ୍ଛେଦ ଦୋଷ ଶାପ ଦିଅଇଟି ଜନ୍ତୁନାଶ ।୭୫।
ପାରେଶ୍ୱର ବୋଇଲେ ନ ଦେଖୁ କରତାର...
ଦିବସେ ଶୃଙ୍ଗାରେ ଯେ ବନିତା ରହିଲା
ମେଷ ମାସ ଶୁକ୍ଳପକ୍ଷ ତିଥି ତୃତୀୟା ହୋଇଥିଲା।

ଏହା ପରେ 'ଦିବସେ ଶୃଙ୍ଗାର'ର ଅନ୍ୟ ଦୁର୍ଗୁଣ ସବୁ କୁହାଯାଇଛି। ପାରେଶ୍ୱର ଏ ସବୁ ଆପତ୍ତି ଓ ଅଭିଯୋଗ ଦୂର କରିବା ପରେ ପୁଣି କୁହାଯାଇଛି :

ବିଶେଷେ ମହାତମା ରତିଶାସ୍ତ୍ରେ ଜିତା
ଅନେକ ରସେ ଶୃଙ୍ଗାର ସହିଲା ବନିତା
ମେଷମାସ ଶୁକ୍ଳ ପକ୍ଷ ତିଥି ଯେ ତୃତୀୟା
ସେଦିନ ରଷିଙ୍କର ଶୃଙ୍ଗାର ସଜ୍ରୀୟା। (ପୃ.୮୧)

୭୭ ପଦଟି ପୁଣି ଥରେ ୮୭ ଓ ୮୮ ପଦର ଅଂଶ ରୂପେ ପ୍ରକାଶ ପାଇଛି। ତେଣୁ ୭୭ ପଦଟି ଯେ କେବଳ ଅନାବଶ୍ୟକ, ତାହା ନୁହେଁ, କ୍ରମ ରକ୍ଷାରେ ମଧ୍ୟ ବାଧା ସୃଷ୍ଟି କରିଛି।

(୪) ପୁନରାବୃତ୍ତିର ଅନ୍ୟ ଗୋଟିଏ ଉଦାହରଣ ୧୧୬ ପୃଷ୍ଠାରେ ଦେଖିବାକୁ ମିଳେ :

ବୃଷଭ ବୋଇଲା ଦେବ ପ୍ରତକ୍ଷେ ପାଇଲି
ତୁମ୍ଭର ମୁଣୋହି ନ କରୁଣୁ ମୁଁ ଆଗେ ଯେ ଖାଇଲି ।୫୧।

ପୁଣି –ଯେତେକ ଯୋଗାଡ଼ ତୁମ୍ଭର ମଢ଼ ଫୁଲି
ତୁମ୍ଭର ମୁଣୋହି ନ କରୁ ମୁଁ ଆଗେ ଯେ ପାଇଲି।

ପରବର୍ତ୍ତୀ ଯୁଗର କୌଣସି ଲିପିକାର ସେବକ ପାଇଁ ସ୍ୱାମୀର ଅର୍ଥାତ୍ ଭକ୍ତ ପାଇଁ ଭଗବାନଙ୍କର ଚିନ୍ତାର ଉଦାହରଣ ରୂପେ ୫୨ ଓ ୫୩ ପଦ ସଂଯୋଗ କରିଛନ୍ତି ଏବଂ ପରିବର୍ତ୍ତିତ ପଦ ସହ ସମ୍ପର୍କ ରକ୍ଷା କରିବା ପାଇଁ 'ତୁମ୍ଭର ମୁଣୋହି'କୁ ଦୁଇଥର ଲେଖିଛନ୍ତି। ଗୃହୀତ ପୋଥିଜାତୀୟ ଅନ୍ୟାନ୍ୟ ପୋଥିରେ ଏପରି ପାଠ ମିଳିବାର ସମ୍ଭାବନା ଥିଲେ ହେଁ ମୂଳୁଗାଁ ପୋଥିରେ ପୁସ୍ତକର ୫୨ ଓ ୫୩ ପଦ ନାହିଁ ଏବଂ 'ତୁମ୍ଭର ମୁଣୋହି' ପଦ କେବଳ ଥରେ ଆସିଛି। ତେଣୁ ଏଥିରେ ତିନୋଟି ପଦ ପ୍ରକ୍ଷେପ ପରି ବୋଧହୁଏ।

(୫) ପୁନରାବୃତ୍ତି ତଥା ପ୍ରକ୍ଷେପର ଆଉ ଗୋଟିଏ ଉଦାହରଣ ପରୀକ୍ଷା କରାଯାଇପାରେ

ମାତାର ବଚନ ଯହୁଁ ନ କଲେ ହାଦେ ଭୀଷ୍ମେ
ସତ୍ୟବତୀ ଉଠିଗଲେ ହୋଇଣ ବଡ଼ ବିସ୍ମେ
ଅନେକ ବିଚାରି ତ ସତ୍ୟବତୀ ଗଲେ ଉଠି
ଯମୁନା ନଦୀକୂଳେ ବ୍ୟାସଙ୍କୁ ଯାଇ ଭେଟି ।୨୦।
(ପୃଷ୍ଠା-୭୧)

ଏହି ଦୁଇଟି ପଦରେ 'ସତ୍ୟବତୀ ଉଠିଗଲେ' ପୁଣି ଥରେ 'ସତ୍ୟବତୀ ଗଲେ ଉଠି'ରେ ପରିଣତ ହୋଇ ପ୍ରକାଶ ପାଇଛି। କେବଳ ସେତିକି ନୁହେଁ, ୧୯ ପଦ ଅନାବଶ୍ୟକ।







ମୁଲୁଗାଁ ପୋଥି ସହ ତୁଳନା କରି ନିମ୍ନରେ ଏହାର ପାଠ ନିର୍ଣ୍ଣୟ କରାଯାଇଛି ।

ମୁଁ ଯେ ଦାରା ସଂଘରିଲି ପିତାର ନିମନ୍ତେ
ସଂହାଥେ କଲାକୃତ ମୁଁ ଲଂଘିବି କେମନ୍ତେ
ଅନେକ ବିଚାରି ତହୁଁ ସତ୍ୟବତୀ ଗଲେ ଉଠି
ଯମୁନା ନଦୀକୂଳେ ବ୍ୟାସଙ୍କୁ ଯାଇ ଭେଟି ।

(୬) ପ୍ରକ୍ଷେପ ପୁନରାବୃତ୍ତିର ଆଉ ଗୋଟିଏ ପଙ୍‌କ୍ତି ବିଚାର କରାଯାଇପାରେ । ପଙ୍‌କ୍ତିଟି ହେଉଛି :

ଅନୀତି ପ୍ରକାରେଣ ଲଗାବନ୍ତି କଳି
ରାନ୍ଧଣା ପାଗ ଭାଙ୍ଗଇ ଅନମିତେ ପଡ଼ଇ ବୋବାଳି
ସଂସାରେ ତାହାର ନିନ୍ଦା କରନ୍ତି ସକଳେ
ଏ ବଚନ ଶୁଣି ଗଙ୍ଗା କାନ୍ଦନ୍ତି ବିକଳେ ।

୧୫୪ ପଦର 'ପଡ଼ଇ ବୋବାଳି' ପୁଣି ଥରେ 'କାନ୍ଦନ୍ତି ବିକଳେ' ହୋଇ ୧୫୫ ପଦରେ ପ୍ରକାଶ ପାଇଛି । କଳି ଲଗାଇ, ରାନ୍ଧଣା ପାଗ ଭାଙ୍ଗି, ବିନା କାରଣରେ କାନ୍ଦି ଗୃହ ମଧରେ ଗଙ୍ଗା ଯେଉଁ ଭୀଷଣ ପରିସ୍ଥିତି ସୃଷ୍ଟି କରିଥିଲେ ସେଥିରୁ ନିବୃତ୍ତ ହେବାପାଇଁ ଶାନ୍ତନୁ ତାଙ୍କୁ ଅନୁରୋଧ କରି କହିଛନ୍ତି ।

ଋଷିଏ ବୋଲନ୍ତି ଯେ ରହ ରହ ସଂଘାତ
କିସ ଅର୍ଥେ ରୋଳ କରୁ ଅନମିତ ।

ଏ ଦୁଇ ପଦ ମଧ୍ୟରୁ 'ସଂସାରେ... ବିକଳେ' ପଦକୁ ଉଠାଇ ନେଲେ ପ୍ରସଙ୍ଗ ବର୍ଣ୍ଣନାରେ କୌଣସି ବ୍ୟାଘାତ ସୃଷ୍ଟି ନ ହୋଇ ବରଂ ଭାବ ପ୍ରକାଶ କରିବାରେ ସାହାଯ୍ୟ କରେ । କେତେକ ପୋଥିରେ ଏ ପଦ ଉହ୍ୟ ଥିବାରୁ ଏହା ଯେ ପରବର୍ତ୍ତୀ ପ୍ରକ୍ଷେପ ଏବଂ ସମାଜର ନିନ୍ଦାକୁ ଅନୁଲେଖକ ମହତ୍ତ୍ୱ ଦେଇ ଏହାର ସଂଯୋଜନା କରିଛନ୍ତି, ଏହା ହିଁ ଜଣାଯାଏ ।

(୭) ଅମ୍ବିକା ଓ ଅମ୍ବାଳିକାଙ୍କୁ ସତ୍ୟବତୀଙ୍କର ଉପଦେଶ ପ୍ରସଙ୍ଗରେ ପ୍ରକ୍ଷେପ ଓ ପୁନରାବୃତ୍ତିର ଆଉ ଗୋଟିଏ ଉଦାହରଣ ଦେଖିବାକୁ ମିଳେ । ପଦଗୁଡ଼ିକ ହେଉଛି :

କଥାଏ ପଚାରିବୁ ସତ୍ୟକର ତୁମେ ବେନି
ସତ୍ୟ କର ତୁମେ ଗୋ ସୋମ ବଂଶର ଠାକୁରାଣୀ ।
(ପୃ ୭୪)

ଅଥଚ ପଚାରିବା ପୂର୍ବରୁ ସେମାନେ ଧର୍ମହାନି ହେବ ବୋଲି ଆପତ୍ତି କରିଛନ୍ତି । ଏ ସବୁ ଆପତ୍ତି ଅଭିଯୋଗ ପ୍ରସ୍ତାବ ପରେ ଆସିବା କଥା —

ଶୁଣି ଅମ୍ବାଳିକା କରନ୍ତି ଦଉନି
କେମନ୍ତେ କରିବୁ ଯେହା ହୋଇବ ଧର୍ମହାନି ।

ଏଥିରେ 'ସତ୍ୟକର ତୁମର' ପୁନରାବୃତ୍ତି ହେବା ପରେ ଅଧିକ ପଂକ୍ତି ସଂଯୋଜିତ ହୋଇ ଏ ପ୍ରକାର ବିଭ୍ରାଟ ସୃଷ୍ଟି କରିଛି ।

ମୁଲୁଗାଁ ପୋଥି ଅନୁଯାୟୀ ଏହାର ପାଠ ହେବ :
କଥାଯେ ପଚାରିବୁ କହିବ ତୁମ୍ଭେ ବେନି
ଶୁଣ ଅମ୍ବିକା ଅମ୍ବାଳିକା କରନ୍ତି ଦଉନି ।

'ସତ୍ୟକର ତୁମ୍ଭେ ଗୋ' ଏବଂ 'କେମନ୍ତେ କରିବୁ ଯେହା' ପାଦ ଦୁଇଟି ପରବର୍ତ୍ତୀ ପ୍ରକ୍ଷେପ ।

ପ୍ରକ୍ଷେପ ଓ ପୁନରାବୃତ୍ତି ବ୍ୟତୀତ ପୋଥି ସମ୍ପାଦନାରେ ଅନ୍ୟ କେତେକ ବିଚ୍ୟୁତି ମଧ୍ୟ ଦେଖିବାକୁ ମିଳେ । ପୋଥି ନକଲକାର ନିଜର ଅଜ୍ଞତା ଯୋଗୁ ହେଉ ବା ଉଚ୍ଚାରଣ ପଦ୍ଧତିର ଅନୁକରଣ କରିବା ଯୋଗୁଁ ହେଉ, ଗୋଟିଏ ଶବ୍ଦକୁ ବିଭିନ୍ନ ଭାବେ ଲିପିବଦ୍ଧ କରିଥା'ନ୍ତି । ସମ୍ପାଦକ କେବଳ ସେ ସବୁକୁ ଅନୁକରଣ ନ କରି ନିଜର ବିଚାର ପ୍ରୟୋଗ ଦ୍ୱାରା ସେ ସବୁ ପ୍ରାଚୀନ ରୂପ ନିର୍ଣ୍ଣୟ କରିବାର କଥା । ଅଥଚ ମହାଭାରତ ସମ୍ପାଦନାରେ ସେ ସବୁର କୌଣସି ବିଚାର ହୋଇଥିବା ଜଣାଯାଏ ନାହିଁ । ଉଦାହରଣ ପାଇଁ କେତୋଟି ଶବ୍ଦ ପାଠକମାନଙ୍କ ଗୋଚରାର୍ଥେ ନିମ୍ନରେ ପ୍ରଦତ୍ତ ହେଲା । ସମ୍ପାଦକ ସଂସ୍କୃତ 'ସ୍ୱୟମ୍ବର' ଶବ୍ଦକୁ 'ସଅମ୍ବର', 'ସୟମ୍ବର' ଓ 'ସୟଂବର' ଲେଖିଛନ୍ତି । ସେହିପରି 'ନୋ ହୋଇ', 'ନୋହଇ', 'ହୁଅ', 'ହୋଅ' ପ୍ରଭୃତି ଶବ୍ଦ । ଏପରିକି ଗୋଟିଏ ପଙ୍‌କ୍ତିରେ 'ନୋହୋଇ'ର ଦୁଇଟି ରୂପ ବ୍ୟବହୃତ । 'ନୋହଇ ଈଶ୍ୱରଯେ ନୋହୋଇ ବିଶ୍ୱନାଥ' । ଟିକେ







ସାବଧାନ ହୋଇଥିଲେ ସମ୍ପାଦନାରୁ ଏ ପ୍ରକାର ତ୍ରୁଟିକୁ ସମ୍ପାଦକ ତ୍ୟାଗ କରିପାରିଥା'ନ୍ତେ ।

ସେହିପରି ପ୍ରାଚୀନ ଶବ୍ଦ ଗ୍ରହଣରେ ସମ୍ପାଦକ କୌଣସି ନିୟମ ପାଳନ କରିନାହାନ୍ତି । ସମ୍ପାଦକ 'ସନ୍ତ' ପାଇଁ 'ସନ୍ଥ', 'ଦୂର୍ବାର' ପାଇଁ 'ଦୁର୍ଭାର', 'ଦୁର୍ବାସା' ପାଇଁ 'ଦୁର୍ଭାସ', 'ବିନତି' ପାଇଁ 'ବିନୋପନ୍ତି', 'ସଂଘାତି' ପାଇଁ 'ସଂଘାତ', 'ପର୍ଶୁରାମ' ପାଇଁ 'ପ୍ରଶୁରାମ', 'ଶୃଗାଳ' ପାଇଁ 'ଶ୍ରିଗାଳ', 'ବିହରନ୍ତି' ପାଇଁ 'ବିହନ୍ତେ', ପ୍ରଭୃତି ପ୍ରାଚୀନ ଶବ୍ଦ ଗ୍ରହଣ କରିଥିଲେହେଁ, 'ବିଖ୍ୟାତି' ପାଇଁ 'ବିଛାତି', 'ଦୁଧ୍ୱଂସ' ପାଇଁ 'ଦୁଧଂଶ', 'କୋଳ' ପାଇଁ 'କୋଡ଼', 'ପଥ' ପାଇଁ 'ପନ୍ଥ', 'ଉତ୍ସବ' ପାଇଁ 'ଉଚ୍ଛବ', 'ଉର୍ଦ୍ଧନା' ପାଇଁ 'ଭର୍ଚ୍ଛନା', 'ଆଶ୍ଚର୍ଯ୍ୟ' ପାଇଁ 'ଆଶ୍ରିଯ', 'ସମ୍ୟୋଧନା' ପାଇଁ ମାହାତମା', 'ସ୍ତନ' ପାଇଁ 'ଥନ', ପ୍ରଭୃତି ପୋଥିର ପ୍ରାଚୀନ ପ୍ରୟୋଗକୁ ମନଇଚ୍ଛା ବ୍ୟବହାର କରିଛନ୍ତି । ଅନେକ ସମୟରେ ଏସବୁକୁ ରଖିଥିଲେ ହେଁ କୌଣସି କୌଣସି ସ୍ଥାନରେ ଏସବୁ ଶବ୍ଦର ତତ୍ସମ ରୂପ ରଖିଛନ୍ତି । ପ୍ରୟୋଗର କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ । ତେଣୁ 'କାତ୍ୟାୟନୀ' ଶବ୍ଦ 'କାତ୍ୟାୟିନୀ' ଓ 'କାନ୍ତାନି', 'ଉତ୍ସବ'... 'ଉଚ୍ଛବ' ପୁଣି 'ଉତ୍ସବ' ରୂପେ ବ୍ୟବହୃତ ହୋଇଛି । ଏ ସବୁର ଅପଭ୍ରଂଶ ରୂପ ପ୍ରତି ସମ୍ପାଦକ ସଚେତନ ହୋଇଥିଲେ ଭଲ ହୋଇଥା'ନ୍ତା ବା ପୋଥିରେ ଥିବା ବିଭିନ୍ନ ରୂପକୁ ଗ୍ରହଣ କରି ସେ ବିଷୟରେ ନିଜର ମତାମତ ପ୍ରକାଶ କରିପାରିଥା'ନ୍ତେ ।

ପଣ୍ଡିତ ଗୋପୀନାଥ ନନ୍ଦ, ଭାରତ ଦର୍ପଣ ପୁସ୍ତକରେ ପୁରାଣ ପ୍ରକାଶକ କମ୍ପାନୀ ଦ୍ୱାରା ପ୍ରକାଶିତ ମହାଭାରତ ସହ ତାଙ୍କ ପୋଥିକୁ ତୁଳନା କରି ତାଙ୍କ ପୋଥିରେ ନଥିବା କେତେକ ପ୍ରୟୋଗକୁ ପରବର୍ତ୍ତୀ ସଂଯୋଜନା ବୋଲି ମତ ଦେଇଥିବା ସମ୍ପାଦକ ସେ ସବୁକୁ ତାଙ୍କ ସମ୍ପାଦନାରେ ଗ୍ରହଣ କରିଛନ୍ତି ।

ଉଦାହରଣ :

(୧) ଦିନ ସାରା ବୃଷଭକୁ ବୁଲାନ୍ତି ଉପବାସେ
ଗିରି ଅରଣ୍ୟରେ ପଶି କ୍ଷେପନ୍ତି ଆକାଶେ ।

ପଣ୍ଡିତ ଗୋପୀନାଥ ନନ୍ଦ 'ଦିନସାରା' ପ୍ରୟୋଗ ସ୍ଥାନରେ ତାଙ୍କ ପୋଥିରେ 'ଦିନଯାକ' ଦେଖି ଏହାକୁ ଉପଯୁକ୍ତ ପାଠ ରୂପେ ଗ୍ରହଣ କରି 'ଦିନସାରା' 'ରାତିସାରା'କୁ ବଙ୍ଗ ଭାଷାନୁକରଣର ଫଳ ବୋଲି ମନ୍ତବ୍ୟ ଦେଇଛନ୍ତି । ସଂପାଦିତ ମହାଭାରତରେ ଏହି ଦୁଇଟି ନିମ୍ନଭାବେ ଗୃହୀତ ହୋଇଛି ।

ମନ ସରି ବୃଷଭକୁ ବୁଲନ୍ତି ଉପବାସେ
ଗିରି ଅରଣ୍ୟରେ ପଶି କ୍ଷେପନ୍ତି ଅକାଶେ ।

'ମନସରି' ପ୍ରୟୋଗକୁ ନ ବୁଝି ପାରି ଉତ୍କଳ ବିଶ୍ୱବିଦ୍ୟାଳୟର ଗୋଟିଏ ପୋଥିରେ ଏହାର ପାଠ ହୋଇଛି 'ମନ ଶରଧେ ଦେବ ବୋଲନ୍ତି ଉପବାସେ' । ଏହି 'ସରି'କୁ ନ ବୁଝି କୌଣସି ନକଲକାର ତାଙ୍କ ସମୟରେ ପ୍ରଚଳିତ ଅପେକ୍ଷାକୃତ ସହଜ 'ସାରା' ଶବ୍ଦର ପ୍ରୟୋଗ କରିଛନ୍ତି ଓ ଶେଷରେ ଏହା 'ଦିନସାରାରେ ପରିଣତ ହୋଇଛି ଓ ଅର୍ଥରେ 'ସାରା ଶବ୍ଦ' ପରିବର୍ତ୍ତେ 'ଯାକ'ର ପ୍ରୟୋଗ ହୋଇଛି । 'ସରି' 'ସାରା' 'ଶରଧେ'ରେ ସାଦୃଶ୍ୟ ଥିବା ବେଳେ 'ଯାକ' ଅନ୍ୟ ଏକ ପୋଥି ପରିବାରରୁ ଆସି ମୂଳ ଶବ୍ଦକୁ ଚିହ୍ନିବାରେ ଅସୁବିଧା ସୃଷ୍ଟି କରିଛି । 'ମନ ସରି' 'ମନ ଶରଧେ', 'ଦିନ ସାରା' ଓ 'ଦିନଯାକ' ଏହି ଚାରୋଟି ପ୍ରୟୋଗ ମଧ୍ୟରୁ 'ମନ ସରି'ର ଅର୍ଥ ଅପେକ୍ଷାକୃତ ଅସ୍ୱଚ୍ଛ । ତେଣୁ ଏହାକୁ ମୂଳ ବା ପ୍ରାଚୀନ ପ୍ରୟୋଗ ରୂପେ ଗ୍ରହଣ କରି ଅନ୍ୟ ପ୍ରୟୋଗ ସବୁକୁ ପରବର୍ତ୍ତୀ ପାଠ ରୂପେ ଗ୍ରହଣ କରାଯାଇପାରେ । କିନ୍ତୁ ଏହି ପାଠ ନିର୍ଣ୍ଣୟ ତୁଳନାତ୍ମକ ବିଚାରରେ ସମ୍ଭବ । ଯେଉଁ 'ଯାକ' ବା 'ସାରା ପ୍ରୟୋଗ ସମ୍ଭାବନା, ସେ ସବୁକୁ ବିଚାରକୁ ଆଣି ଗୋପୀନାଥ ନନ୍ଦଙ୍କ ପ୍ରଶ୍ନର ଉତ୍ତର ଦିଆଯାଇପାରେ । ଅଥଚ ସମ୍ପାଦକ ଏ ବିଷୟରେ ତାଙ୍କ ସମ୍ପାଦନାରେ କି ସିଦ୍ଧାନ୍ତ କଲେ ଜଣାଯାଏ ନାହିଁ ।

(୨) କୁଚି ପଚାରିଲେ ଆଲୋ ଶବରୁଣି
ପଣ୍ଡୁ ମାଦ୍ରିଙ୍କର କହ ତଥ୍ୟ ବାଣୀ ।

(ପୃ. ୬, ଶ୍ରୀଭାଗବତ ଦର୍ପଣ)







ଏହା ଉପରେ ମନ୍ତବ୍ୟ ଦେଇ ପଣ୍ଡିତ ଗୋପୀନାଥ ନନ୍ଦ କହିଛନ୍ତି, ଏପରି ଅନେକ ସ୍ଥଳରେ ଛାପାରେ 'କହନି' (କହ) 'ଖାଆନି' (ଖାଆ) 'ବହନି' (ବହ) ଇତ୍ୟାଦି କ୍ରିୟା ଦେଇ ଅଛନ୍ତି । ଓଡ଼ିଆରେ ଏପରି କ୍ରିୟା ହୁଏ ନାହିଁ ଅଥଚ ତାଳପତ୍ର ପୁସ୍ତକମାନଙ୍କରେ ମଧ୍ୟ ଦେଖାଯାଏ । ଯେପରି,

ସତ୍ୟବାଦୀ ବୋଇଲେ ବାବୁ ଅଛିନି କଥାଏ,
ତୁ ମୋହୋର ନନ୍ଦନରେ ମୁଁ ତୋହୋର ମାୟେ ।(ପୃ.୭୨)
ସ୍ୱାମୀ ଲୟେ କରି ଦେଖନି ମୋହାର ଗୁଆଣି
ଗନ୍ଧ ଆମୋଦଇ କର୍ପୂର ରସ ଜାଣି ।

ସାଧାରଣତଃ ପୋଥିରେ 'ନି ପ୍ରୟୋଗ ଦେଖିବାକୁ ମିଳେ ନାହିଁ । ତେବେ ଯେପରି ଜଣାପଡ଼ୁଛି ସମ୍ପାଦକ 'କିସ ଦିଲା', 'ହେନ' ପ୍ରଭୃତିକୁ ଗ୍ରହଣ କଲାପରି 'ନି' ପ୍ରୟୋଗକୁ ଗ୍ରହଣ କରିଛନ୍ତି । ପ୍ରାଚୀନ ବଙ୍ଗଳା ପରି ପ୍ରାଚୀନ ଓଡ଼ିଆରେ ଏ ସବୁ ପ୍ରୟୋଗ ଥିବା ପରି ଅନୁମାନ କରାଯାଇପାରେ । ତେବେ ଏସବୁ ପ୍ରୟୋଗ ଲିପିକାରଙ୍କ ଉପରେ ଆଞ୍ଚଳିକ ପ୍ରଭାବ ହୋଇଥିବାର ଅନୁମାନ କରାଯାଇପାରେ । ସାଧାରଣତଃ ବାଲେଶ୍ୱର, ମେଦିନୀପୁର ପ୍ରଭୃତି ଅଞ୍ଚଳରୁ ସଂଗୃହୀତ ପୋଥିରେ ଏ ପ୍ରକାର ପ୍ରୟୋଗ ବିଶେଷ ଭାବେ ଦେଖିବାକୁ ମିଳେ । ସମ୍ପାଦକ ଆଞ୍ଚଳିକ ପ୍ରଭାବର ଏ ସବୁ ବୈଶିଷ୍ଟ୍ୟକୁ ସଂପାଦନା କଲାବେଳେ ବିଚାର କରିଥିଲେ ଭଲ ହୋଇଥା'ନ୍ତା, ଏବଂ ଗୋପୀନାଥ ନନ୍ଦଙ୍କ ପ୍ରଶ୍ନର ସମାଧାନ ମଧ୍ୟ ଓଡ଼ିଆ ପାଠକମାନେ ବିଚାର କରିବାକୁ ସମର୍ଥ ହୋଇଥା'ନ୍ତେ । ସମ୍ପାଦନାରେ ଏସବୁ ଗୃହୀତ ହେବାପରେ ଜଣାପଡ଼ୁଛି ଯେ, ସତେ ଯେପରି ଗୋପୀନାଥ ନନ୍ଦଙ୍କ ବିଚାର ବା ମନ୍ତବ୍ୟ ସୁଚିନ୍ତିତ ନଥିଲା ।

ଛପା ପୁସ୍ତକରେ (ପୁରାଣ ପ୍ରକାଶକ କମ୍ପାନୀ) କେତେଗୁଡ଼ିଏ ଅପପାଠ ଓ ଅର୍ଥଶୂନ୍ୟ ପଙ୍କ୍ତି ପ୍ରବେଶ କରିଥିବାର ପଣ୍ଡିତ ଗୋପୀନାଥ ନନ୍ଦ ଅଭିଯୋଗ କରିଛନ୍ତି । ସମ୍ପାଦିତ ମହାଭାରତ ମଧ୍ୟ ଏପରି ଅର୍ଥଶୂନ୍ୟ ପାଠରୁ ମୁକ୍ତ ନୁହେଁ । ମୁଲୁଗାଁ ପୋଥିକୁ ତୁଳନାରେ ରଖି ଏପରିପରି କେତେ ପଙ୍କ୍ତିର ଶୁଦ୍ଧତା ବିଚାର କରାଯାଇପାରେ ।

(୧) ନାଥ ନୃତ୍ୟ ରଙ୍ଗେଣ ଭୋଳା (ପୃ.୩)

ମୁଲୁଗାଁ ପୋଥି : "ଭରହ ରସ ନାଥ ନୃତ୍ୟ ରଙ୍ଗ ଭେଳା ।"

(୨) ଗର୍ଜନ ନାଦ କରି ନିର୍ଘାତ ନରପତି,
ସଅୟରେ ବିଜୟେ ଯାଇ ମଣ୍ଡଳ ଚକ୍ରବ୍ରତୀ ।
(ପୃ.୧୩)

ଗଙ୍ଗାଙ୍କର ପିତା ହେଉଛନ୍ତି ସୋମବଂଶୀୟ ରାଜା ନିର୍ଘାତ । ସେ ଶମ୍ଭୁ ରାଣଙ୍କର ପରବର୍ତ୍ତୀ ବଂଶଧର । ତେଣୁ ଶମ୍ଭୁରାଣଙ୍କ ବିବାହ କାଳରେ ତାଙ୍କର ଉପସ୍ଥିତି ଅପ୍ରାସଙ୍ଗିକ । ଏଠି ମୁଲୁଗାଁ ପୋଥିରେ ପାଠ ହେଉଛି :

ଗର୍ଜନ ନାଦ କରି ଘାତ କରନ୍ତି ନରପତି
ଏମନ୍ତେ ବିଜେ ଯାଇ ମଣ୍ଡଳ ଚକ୍ରବ୍ରତୀ ।

(୩) ଯେମନ୍ତେ ସମୟେ ପ୍ରୀତି ଯେ ଅନେକ ବଢ଼ିଗଲା,
ପୁଣି ହାଦେ ବେନି ସହସ୍ର ବରଷ ହୋଇଲା ।

ଏହି ପଦର ପ୍ରଥମ ପାଦ ୯୯ ପଦର ପ୍ରଥମ ପାଦ ଅର୍ଥାତ୍ — 'ଯେମନ୍ତେ ଅନେକ ଯେ ବଢ଼ିଲା ପୀରତି'ର ପୁନରାବୃତ୍ତି ଏବଂ ଏହାର ଅର୍ଥ ଅସ୍ପଷ୍ଟ । ମୁଲୁଗାଁ ପୋଥିର ପାଠ ଏହା ଅପେକ୍ଷା ଅପେକ୍ଷାକୃତ ଉତ୍କୃଷ୍ଟ —

ଏହିପରି ଅନେକ ସମୟ ବହିଗଲା
ପୁଣି ହିଁ ବେନି ସହସ୍ର ବରଷ ଶୃଙ୍ଗାରେ ବଞ୍ଚିଲା ।

(୪) ରମଣୀ ମନ୍ଦିରେଣ ଲେଖନି ପିତୁଳି
ରତିବନ୍ଧେ ଲିହାଇଲେ କ୍ରୀଡ଼ା ରସେ କେଳି ।

ଦ୍ୱିତୀୟ ପାଦର 'ରସେ' ଶବ୍ଦ ସ୍ଥାନରେ ଅନ୍ୟ ବହୁ ପୋଥିର ପାଠ 'ରଂଗ' ରଖିଲେ ଅର୍ଥ ଅଧିକ ସ୍ପଷ୍ଟ ହୁଏ ।

(୫) "ଆଦିହୁଁ କୁରୁବଂଶ ହୋଇଲେ ଯେଥୁ ଉତପତ୍ତି ।
(ପୃ. ୪୧)
ଏ ସ୍ଥଳରେ 'ଆଦିହୁଁ' ନ ହୋଇ 'ଆଦି' ହେବ ।

(୬) ଯେମନ୍ତେଣ ରାଜ୍ୟ କରନ୍ତି ବେନି ଭାଇ ।
ଅନେକ ଯାଗ ଯଜ୍ଞ କରନ୍ତି ସତତି ଅର୍ଥ ପାଇଁ ।"
(ପୃଷ୍ଠା - ୨୯)







'ବେନି' ସ୍ଥଳରେ 'ତିନି' ହେବ । କାରଣ ପୂର୍ବରୁ ଭୀଷ୍ମ, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବିର୍ଯ୍ୟଙ୍କ କଥା ରହିଛି । ପୁଣି ସନ୍ତତି ଅର୍ଥ ପାଇଁ ସ୍ଥାନରେ 'ପୁତ୍ର ସନ୍ତାନ ପାଇଁ' ପାଠ ଅଧିକ ସ୍ପଷ୍ଟ ।

(୭) ସନ୍ତାନ ଧର୍ମ କହଇ ଶୁଣ ଗୋ ବାରତା

ଏହି ସ୍ଥଳରେ 'ସନ୍ତାନ ଧର୍ମର କହଇ ବାରତା' ଅଧିକ ସ୍ପଷ୍ଟ ।

(୮) ରତି ଶାହସ୍ର ପୁରାଣ ସେ ଶିଖାନ୍ତି ବ୍ରହ୍ମଚାରୀ

ବିଧାନ ସେ ଶିଖାନ୍ତି ବ୍ରହ୍ମଚାରୀ ପାଠ ଗ୍ରହଣ କଲେ ପୁରାଣ ଶବ୍ଦର ଅନାବଶ୍ୟକତା ସ୍ପଷ୍ଟ କରାଯାଏ ।

(୯) ପୁତ୍ର ଗୋଟି ଉତପତ୍ତି ଗର୍ଭୁଂ ଯେତେବେଳେ
ମୁଖ ଚାହାନ୍ତେଣ ମାତା ପିତାର ଜୀବନ ସୁଫଳେ । (୨୩୮)

ଦୁତୀୟେଣ ପିତା ତା'ର ଚାହିଁବ ବଦନ
ଜନ୍ମକୁ ଫିଟାଇ ତା'ର ଅପୁତ୍ରିକ ଲକ୍ଷଣ । (୧୩୯)
(ପୃଷ୍ଠା - ୩୮)

ଏହି ଦୁଇଟି ପଦରେ ପ୍ରଥମେ ମାତା ପରେ ପିତାର କଥା କୁହାଯାଇଛି । କିନ୍ତୁ ଶୁଦ୍ଧପାଠରେ ପ୍ରଥମ ପଦରେ 'ମାତା ପିତାର ଜୀବନ ସଫଳ' ଗ୍ରହଣ କରିନେବା ପରେ ଦୁତୀୟେଣ ପିତା ଅର୍ଥହୀନ ହୋଇପଡ଼େ । ତେଣୁ ଏହାର ପାଠ ହେଉଛି —

ମୁଖ ଚାହାନ୍ତେଣ ମାତାର ଜୀବନ ସୁଫଳେ ।

ଶୁଦ୍ଧ ପାଠ ନିର୍ଣ୍ଣୟ କଲାବେଳେ ପ୍ରତ୍ୟେକ ଶବ୍ଦ ଓ ଶବ୍ଦର ପ୍ରତି ପ୍ରୟୋଗ ପଦ୍ଧତି ଜାଣି ହୁଏ ନାହିଁ । ଶବ୍ଦ ସବୁକୁ ଟିକେ ଏପାଖ ସେପାଖ କରିଦେଲେ ଅର୍ଥ ଦୃଷ୍ଟିରୁ ବହୁ ପରିବର୍ତ୍ତନ ହୁଏ । ନିମ୍ନରେ ଆଲୋଚନା ପାଇଁ କେତୋଟି ପଙ୍କ୍ତି ପ୍ରଦତ୍ତ ହୋଇଛି ।

(୧) ଯେତେକ ଦୋଷେଣ ମୋତେ କୋପ ତ କଲା
ଭତ୍ସନା ନ କରିଣ ଯେ ଗାଙ୍ଗୀ ନ ବୋଇଲା ।୨୧୮
ଛାଡ଼ି ଯାଇ ନ ପାରଇଁ ଯେ ମୁହିଁ ସତ୍ୟବ୍ରତେ
ସତ୍ୟକୁ ଲଙ୍ଘିଣ ଯେଥୁ ଯିବଇଁ କେମନ୍ତେ ।

ତୁଳନା ପାଇଁ ଆଉଗୋଟିଏ ପାଠ ଦିଆଯାଉଛି..।

ଯେତେକ ଦୋଷେଣ ଯେ ମୋତେ କୋପ ନକଲା ।
ଭତ୍ସନା ସହିଲା ଗାଙ୍ଗୀ ନ ବୋଇଲା
ସତ୍ୟ ଛାଡ଼ି ନପାରେ ମୁନି ଅଛି ସତ୍ୟ ଚିରେ
ସତ୍ୟ ଲଙ୍ଘିଣ ମୁହିଁ ଯେ ଯିବଇଁ କେମନ୍ତେ ।

(୨) ଯେ ମହାରାଜ୍ୟେ ପଶିଣ କିପାଁ ବ୍ରତ ରାଜ ସେବି ।
ପୃ-୨୨

ସ୍ଥଳରେ ମହାରାଜେଶ୍ୱର ହୋଇ କିପାଁ ବ୍ରତ ରାଜ ସେବି

(୩) ଅସମ୍ଭାଳି ହୋଇଣ ସେ ଚିତ୍ର ଲେଖନ ପିତୁଳି ।
ବିବସନ ହୋଇଣ ମୁନି ତା'ର ତୁଲେ କରେ କେଳି

(୪) ଅନେକ ବେଶ ବେଶନ ହୋଇ ମହା ଋଷି ।
ଶୃଙ୍ଗାର ନିମନ୍ତେ ସେ ସନ୍ନିଧେ ଥାନ୍ତି ବସି ।
ପଛୁଁ ଆସି କୋଳ କରି ଧରନ୍ତେ ଶୟେଂତନୁଂ
ମହାବଳ ବାଳୀ ସେ ବାହାର ହୁଅଇ ଭୁବନୁ ।

'ସନ୍ନିଧେ ଥାନ୍ତି ବସି' ପୁଣି 'ପଛୁଁ ଆସି କୋଳ କରନ୍ତି' ଉକ୍ତିର ସାମଞ୍ଜସ୍ୟ ନାହିଁ । ମୁଲୁଗାଁ ପୋଥିର ପାଠ ଏ ଅସାମଞ୍ଜସ୍ୟତାକୁ ଦୂର କରି ପାଠକୁ ସ୍ପଷ୍ଟ କରେ—

ଅନେକ ବେଷ ହୋଇ ସାଏନ୍ତନୁ ଋଷି
ଶୃଙ୍ଗାର ନିମନ୍ତେ ସେ କତି କତି ହୁଅନ୍ତି ଆସି
ତା'ପରେ ପଛୁଁ ଆସି କୋଳ କରି ଧରନ୍ତି ।

ମୁଲୁଗାଁ ପୋଥିର ପାଠ ସମ୍ପାଦିତ ମହାଭାରତରେ ଗୃହୀତ ପାଠର ଅତି ନିକଟତମ । ତେବେ ବି ପ୍ରୟୋଗରେ ଏତେ ପରିବର୍ତ୍ତନ ଦେଖିବାକୁ ମିଳେ ଯେ ପ୍ରଦତ୍ତ ପାଠର ସ୍ୱରୂପ ଜାଣି ହୁଏ ନାହିଁ । ଶୁଦ୍ଧ ପାଠରେ ଗୃହୀତ ବହୁ ବିଶିଷ୍ଟ ପ୍ରୟୋଗ ମୁଲୁଗାଁ ପୋଥିରେ ନାହିଁ ।

| ଗୃହୀତ ପାଠ | ମୁଲୁଗାଁ ପୋଥି |
|---|---|
| କିସଅର୍ଥେ | କିପାଁଇ |







| | |
|---|---|
| ଯାଇତେ ନ ଦିଲା | ନ ଦେଲା ଯାଇ |
| ବାଭିଯେ ବାଭିଯେ | ବାପା, ବାପା |
| ସତ୍ୟ ମାନିଥିଲି | ସତ୍ୟ ପାଳିଥିଲି |
| ପ୍ରତିବାଚ | ବୋଇଲେ |
| ରତି ରଂଗ ନର | ରତି ସଙ୍ଗ ହୁଅ |
| କେବଣ ମତେ | କେମନ୍ତେ |
| ପରଦାରାୟେଣୀ | ପରଦାରେଣୀ |
| ଅତ୍ୟନ୍ତ ମାନ | ଆବର୍ତ୍ତମାନ |

କେବଳ ଶବ୍ଦ ନୁହେଁ ବାକ୍ୟ ଗଠନ ରୀତିରେ ବହୁ ପାର୍ଥକ୍ୟ ଦେଖିବାକୁ ମିଳେ । ଅପେକ୍ଷାକୃତ ଅଳ୍ପ ଶବ୍ଦ ମାଧ୍ୟମରେ କୁହାଯାଇ ପାରୁଥିବା ଉକ୍ତିରେ ଅନାବଶ୍ୟକ ଶବ୍ଦ ସଂଯୋଜନା କରି ଏହାକୁ ଦୀର୍ଘ କରାଯାଇଛି ।

(୧) ବ୍ୟାସେ ପ୍ରତିବାଚ ମାତା ଗୋ ମୋହର ହୋଇଲା ସନମତ

ବ୍ୟାସେ ବୋଇଲେ ମୋହର ହୋଇଲା ସହମତ

(୨) ବ୍ୟାସଙ୍କୁ ସନମତ କରାଇ ଚଳିଲେ ସତ୍ୟବତୀ

ବ୍ୟାସଙ୍କର ସନମତେ ଚଳିଲେ ସତ୍ୟବତୀ

(୩) ସନ୍ତାନ ଧର୍ମ କହଇ ଶୁଣ ଗୋ ବାରତା

ସନ୍ତାନ ଧର୍ମର କହଇ ବାରତା ।

(୪) ଅମ୍ବିକାର ଅଙ୍ଗେ ପଡ଼ିଲା ସେ ଅନଙ୍ଗ ସୁନ୍ଦର

ଅମ୍ବିକାଏ ପୀଡ଼ିଲେ ଅନଙ୍ଗ ସୁନ୍ଦର ।

ଏହି ଆଲୋଚନା ସମ୍ପାଦିତ ସାରଳା ମହାଭାରତର କେବଳ ଆଦିପର୍ବର କେତେକ ସମସ୍ୟା ସମ୍ପର୍କରେ ସୂଚନା ଦିଆଗଲା । ସମଗ୍ର ଭାବରେ ସମ୍ପାଦିତ ମହାଭାରତରେ ଏହି ଦୋଷତ୍ରୁଟି ସବୁ ଆଲୋଚନା କରାଯାଇପାରେ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମୃତ୍ୟୁର ପ୍ରାୟ ଦଶବର୍ଷ ପରେ ଏହି ଗ୍ରନ୍ଥ ପ୍ରକାଶ ପାଇଲା ଓ ସେ ସମୟରେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଏହାର ଭାରପ୍ରାପ୍ତ ସମ୍ପାଦକ ଥିଲେ । ତେଣୁ ଏହି ଗ୍ରନ୍ଥର ବିଭିନ୍ନ ଦୋଷତ୍ରୁଟି ପାଇଁ କିଏ କେତେ ଦୂର ଦାୟୀ ତାହା କହିବା ସହଜ ନୁହେଁ । କିନ୍ତୁ ଗୋଟିଏ କଥା ନିଶ୍ଚିତ ଯେ, ଏହି ସମ୍ପାଦିତ ଗ୍ରନ୍ଥ ସାରଳା ମହାଭାରତ ଶୁଦ୍ଧ ବା ପ୍ରମାଣିକ ସଂସ୍କରଣ (definitive edition) ନୁହେଁ ଓ ସେହି ଦୃଷ୍ଟିରୁ କୌଣସି ଗୁରୁତ୍ୱପୂର୍ଣ୍ଣ ଗବେଷଣା ପାଇଁ ଏହା ଉପରେ ନିର୍ଭର କରି ହେବ ନାହିଁ । ବିଭିନ୍ନ ପୋଥିରେ ସାରଳା ମହାଭାରତର ଯେଉଁ ବିଭିନ୍ନ ପାଠ ରହିଛି ଏହି ଗ୍ରନ୍ଥର ପ୍ରକାଶ ଦ୍ୱାରା ସେହି ପାଠର ସମଷ୍ଟିରେ କେବଳ ଆଉ ଗୋଟିଏ ପାଠ ଯୁକ୍ତ ହେଲା । ଅନ୍ୟତ୍ର ଝଂକାର ପତ୍ରିକାରେ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସାରଳା ମହାଭାରତର ଅଙ୍ଗଚ୍ଛେଦ ସମ୍ପର୍କରେ କେତେକ ସୂଚନା ଦେଇଛନ୍ତି । ବିଭିନ୍ନ ଦୋଷତ୍ରୁଟି ବ୍ୟତୀତ ସାରଳା ମହାଭାରତ ଅଙ୍ଗଚ୍ଛେଦ ବିଭିନ୍ନ ଭାବରେ ସାଧିତ ହୋଇଛି । ସେ ସବୁ ବାରାନ୍ତରେ ଆଲୋଚ୍ୟ । କିନ୍ତୁ ଯେଉଁ ପ୍ରତୀକ୍ଷମାଣ ଜାତି ସାରଳା ମହାଭାରତର ପ୍ରକୃତ ସ୍ୱରୂପ ଦେଖିବା ପାଇଁ ଆଶାୟୀ ହୋଇ ରହିଥିଲା ସେ ଯେ ଆଜି ନିଶ୍ଚିତ ଭାବେ ବଂଚିତ ଓ ବ୍ୟର୍ଥ ମନୋରଥ ହୋଇଛି, ଏହା ଆଦି ପର୍ବର ମାତ୍ର ୧୦୮ଟି ପୃଷ୍ଠାକୁ ନେଇ ହୋଇଥିବା ଏହି ସଂକ୍ଷିପ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ।



---

* (ରଚନା ସମ୍ଭାର-୫) ପ୍ରଫେସର କୃଷ୍ଣଚରଣ ସାହୁ, ସ୍ମୃତି ପରିଷଦ, ଭୁବନେଶ୍ୱର ସୌଜନ୍ୟରୁ ।







# ଓଡ଼ିଶାର ତାଳପତ୍ର ପୋଥିରେ ଆୟୁର୍ବେଦ ଶାସ୍ତ୍ର

ମିଲି ବିଶୋଇ

ଓଡ଼ିଆମାନଙ୍କ ପୂର୍ବର କୀର୍ତ୍ତି ତଥା ଗୌରବ କାଳର କରାଳ ସ୍ରୋତରେ ବିଲୀନ ହୋଇଥିଲେ ହେଁ କଳା, ଭାସ୍କର୍ଯ୍ୟ, ସାହିତ୍ୟର ନିଦର୍ଶନ ରାଜ୍ୟ ବ୍ୟାପି ପୁରି ରହିଛି । ଓଡ଼ିଶା ସରକାରଙ୍କ ରାଜ୍ୟ ସଂଗ୍ରହାଳୟ, ବିଭିନ୍ନ ଶିକ୍ଷା ଓ ସାଂସ୍କୃତିକ ଅନୁଷ୍ଠାନ ତରଫରୁ ବହୁ ସଖ୍ୟାରେ ତାଳପତ୍ର ପୋଥି ଓ ପାଣ୍ଡୁଲିପି ସଂଗ୍ରହ କରାଯାଇ ସେଗୁଡ଼ିକର ରକ୍ଷଣାବେକ୍ଷଣ ଓ ପୁନରୁଦ୍ଧାର କରାଯାଇଛି । ପୂର୍ବଜଙ୍କ ଏହି କୀର୍ତ୍ତିରାଜି ଲକ୍ଷ ଲକ୍ଷ ସଂଖ୍ୟାରେ ରାଜନବର, ମଠବାଡ଼ି, ମନ୍ଦିର ତଥା ପୁରପଲ୍ଲୀରେ ପଡ଼ି ରହିଥିଲେ ହେଁ କିଛି ସଂଖ୍ୟାରେ ମାତ୍ର ସଂଗୃହୀତ ହୋଇପାରିଛି । ସମସ୍ତ ବିଦ୍ୟାର ଆଧାର ଏହି ତାଳପତ୍ର ପୋଥିଗୁଡ଼ିକରେ ବେଦ, ତନ୍ତ୍ର, ଦର୍ଶନ, ଗଣିତ, ସଂଗୀତ, ସାହିତ୍ୟ, ପୁରାଣ, ଧର୍ମଶାସ୍ତ୍ର, ଆୟୁର୍ବେଦ ପ୍ରଭୃତି ଶାସ୍ତ୍ର ଲିଖିତ ।

ଓଡ଼ିଶାର ତାଳପତ୍ର ପୋଥିରେ ଲିଖିତ ଆୟୁର୍ବେଦ ଶାସ୍ତ୍ର ଉପରେ ଆଲୋଚନା ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ଏ ପର୍ଯ୍ୟନ୍ତ ସଂଗୃହୀତ ବିଭିନ୍ନ ଅନୁଷ୍ଠାନ ଅପେକ୍ଷା ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ସଂଗ୍ରହ ସର୍ବାଧିକ । ୭୪୩ ଖଣ୍ଡ ଆୟୁର୍ବେଦ ଶାସ୍ତ୍ର ବ୍ୟତୀତ ଗୁଣିଗାରେଡ଼ି ପୋଥି ଶହ ଶହ ସଂଖ୍ୟାରେ ଏଠାରେ ସଂରକ୍ଷିତ ହୋଇ ରହିଛି । ପୁରାତନ ଓ ମଧ୍ୟଯୁଗରେ ଗୁଣି ଗାରେଡ଼ି ପ୍ରୟୋଗ ଦ୍ୱାରା ରୋଗ ଭଲ କରାଯାଇପାରୁଥିଲା । ରାଜ୍ୟ ସଂଗ୍ରହାଳୟ ବ୍ୟତୀତ ଉତ୍କଳ ବିଶ୍ୱବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ଶ୍ରୀ ସଦାଶିବ କେନ୍ଦ୍ରୀୟ ବିଦ୍ୟାପୀଠ, ନୟାଗଡ଼ ଜିଲ୍ଲାର ବାଣୀନିଧି ପାଠଗାର, ଭୁବନେଶ୍ୱରସ୍ଥ କେଦାରନାଥ ଗବେଷଣା ପ୍ରତିଷ୍ଠାନର ପୋଥି ଭଣ୍ଡାରମାନଙ୍କରେ କିଛି କିଛି ଆୟୁର୍ବେଦ ପୋଥି ଗଚ୍ଛିତ ହୋଇ ରହିଅଛି ।

ଓଡ଼ିଆ ଭାଷାରେ ଓ ଓଡ଼ିଆ ଅକ୍ଷରରେ ଲିଖିତ ସଂସ୍କୃତ ଭାଷାରେ ତାଳପତ୍ର ପୋଥି ଓଡ଼ିଶା ବାହାରେ ବହୁପରିମାଣରେ ସଂଗୃହୀତ ହୋଇ ବିଭିନ୍ନ ଅନୁଷ୍ଠାନରେ ଗଚ୍ଛିତ ହୋଇ ରହିଛି । ତନ୍ମଧ୍ୟରେ ଏସିଆଟିକ୍ ସୋସାଇଟି, କଲିକତା, ସମ୍ପୂର୍ଣ୍ଣାନନ୍ଦ ସଂସ୍କୃତ ବିଶ୍ୱବିଦ୍ୟାଳୟ; ଭାରତୀୟ କଳାଭବନ; ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ; ସରକାରୀ ପ୍ରାଚ୍ୟ ବିଦ୍ୟା ପାଣ୍ଡୁଲିପି ପାଠାଗାର, ମାଡ୍ରାସ୍; ସରସ୍ୱତୀ ମହଲ ପାଠାଗାର, ତାଞ୍ଜୋର, ଅଡ଼୍ୟାର ପାଠଗାର ଓ ଗବେଷଣା କେନ୍ଦ୍ର, ମାଡ୍ରାସ୍, ରାଜା ବିଜୟାରାଜେ ସିନ୍ଧିଆ ପାଠାଗାର ଓ ଗବେଷଣା କେନ୍ଦ୍ର, ନାଗପୁର; ଜାତୀୟ ସଂଗ୍ରହାଳୟ, ଦିଲ୍ଲୀ, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ, ଶାନ୍ତିନିକେତନ; ମହାରାଜା ସୟାଜୀ ରାଓ ପାଠାଗାର, ବରୋଦା; ଭଣ୍ଡାରକର ପ୍ରାଚ୍ୟ ବିଦ୍ୟା ଗବେଷଣା ପ୍ରତିଷ୍ଠାନ, ପୁଣେ; ଏଲ୍.ଡ଼ି. ଇନିଷ୍ଟିଚ୍ୟୁଟ୍ ଅଫ୍ ଇଣ୍ଡୋଲୋଜି, ଅହମଦାବାଦ୍; ବୃନ୍ଦାବନର ଗୌଡ଼ୀୟ ମିସନ୍ ଗ୍ରନ୍ଥାଗାର; ଅକ୍ସଫୋର୍ଡ଼ର ଭାରତୀୟ ଗ୍ରନ୍ଥାଗାର ପ୍ରତିଷ୍ଠାନ; ବରଲିନ୍‌ର ଇଣ୍ଡିଆ ହାଉସ୍ ଲାଇବ୍ରେରୀ; ଜର୍ମାନୀର ହେଡେଲ ବର୍ଗ ବିଶ୍ୱବିଦ୍ୟାଳୟ ପ୍ରଭୃତି ଅନ୍ୟତମ । ଅନ୍ୟାନ୍ୟ ପୋଥି ସହ ଶହ ଶହ ସଂଖ୍ୟାରେ ଆୟୁର୍ବେଦ ଓ ଗୁଣିଗାରେଡ଼ି ପୋଥି ଉପରୋକ୍ତ ଅନୁଷ୍ଠାନମାନଙ୍କରେ ଗଚ୍ଛିତ ରହିଅଛି ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ମିଳୁଥିବା ଆୟୁର୍ବେଦ ପୋଥିଗୁଡ଼ିକ ପରୀକ୍ଷା କଲେ ଜଣାଯାଏ, କାୟ, ଶଲ୍ୟ, ଶାଲାକ୍ୟ, ବାଳଚିକିତ୍ସା, ଗ୍ରହଚିକିତ୍ସା, ବିଷଚିକିତ୍ସା, ରସାୟନ, ବାର୍ଦ୍ଧକ୍ୟକରଣ ପ୍ରଭୃତି ଆୟୁର୍ବେଦର ବିଭିନ୍ନ ଅଙ୍ଗ ପର୍ଯ୍ୟବସିତ । ରୋଗମାନଙ୍କ ଲକ୍ଷଣ ଓ ସେଗୁଡ଼ିକର ନିରାକରଣ ନିମନ୍ତେ ବିଭିନ୍ନ ଚିକିତ୍ସା; ରସଶାସ୍ତ୍ର, ଭୈଷଜ୍ୟ କଳ୍ପନା, ଦ୍ରବ୍ୟଗୁଣ ଆଦି ଯାହାକି ବିଭିନ୍ନ ଦ୍ରବ୍ୟ ଓ ଦ୍ରବମାନଙ୍କର ମିଶ୍ରଣରେ ଔଷଧ ନିର୍ମାଣର ପ୍ରଣାଳୀ, ବଟି, ମଲମ, ଭସ୍ମ ପ୍ରଭୃତିର ନିର୍ମାଣ ପ୍ରଣାଳୀ, ତାହାର ମାତ୍ରା, ରୋଗାଧିକାର ଆଦି ବର୍ଣ୍ଣିତ ହୋଇଅଛି । ଏହା ବ୍ୟତୀତ ରୋଗମାନଙ୍କର ନିଦାନ ଅର୍ଥାତ୍ ରୋଗର କାରଣ ଆଦି ଦର୍ଶିତ । ଶରୀର କ୍ରିୟା ବିଜ୍ଞାନ,







ପ୍ରସୂତିରୋଗ ଓ ନିରାକରଣ, ଅଗଦତନ୍ତ୍ର ବିଶଦ ଭାବରେ ବିଭିନ୍ନ ପୋଥିରେ ସନ୍ନିବେଶିତ । ସଂସ୍କୃତ ଭାଷାରେ ଓ ଓଡ଼ିଆ ଅକ୍ଷରରେ ଲିଖିତ ଏହି ବୈଦ୍ୟଶାସ୍ତ୍ର ପୋଥି ବହୁଳ ଭାବରେ ମିଳୁଥିଲେ ହେଁ ସେଗୁଡ଼ିକର ଓଡ଼ିଆ ଗଦ୍ୟାନୁବାଦ ଓ ପଦ୍ୟାନୁବାଦ ମଧ ବହୁପରିମାଣରେ ଦେଖିବାକୁ ମିଳେ । କେତେକ ପୋଥି କେବଳ ଓଡ଼ିଆ ଭାଷା ଓ ଅକ୍ଷରରେ ଲିଖିତ । କେତେ ପୋଥିରେ ନାମୋଲ୍ଲେଖ ନଥାଏ, ତେଣୁ ସେଗୁଡ଼ିକ ସାଧାରଣତଃ ବୈଦ୍ୟଶାସ୍ତ୍ର ବା ଆୟୁର୍ବେଦ ନାମରେ ନାମିତ କରାଯାଇପାରେ । କିନ୍ତୁ ପାଠ ଦୃଷ୍ଟିରୁ ସେଗୁଡ଼ିକ ପ୍ରତ୍ୟେକ ଅନ୍ୟଠାରୁ ପୃଥକ ।

ଓଡ଼ିଶାରେ ମିଳୁଥିବା ବିଭିନ୍ନ ଆୟୁର୍ବେଦ ପୋଥି ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ମାଧବକର ତାଙ୍କର ନିଦାନ ପାଇଁ ସାରା ଭାରତରେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କ ଆୟୁର୍ବେଦ ଶାସ୍ତ୍ର ଦେଶରେ ଅଦ୍ୱିତୀୟ । ବିଦ୍ୱାନମାନେ ମାଧବକର ଓଡ଼ିଶାର ବୋଲି ପ୍ରମାଣ କରିଛନ୍ତି । ତାଙ୍କର ଅନ୍ୟାନ୍ୟ କୃତିମାନଙ୍କ ମଧରେ ମାଧବକର ସାର ସଂଗ୍ରହ, ରୁଗ୍‌ବିନିଶ୍ଚୟ, ଦ୍ରବ୍ୟଗୁଣ, ମାଧବକର ଚିକିତ୍ସା ପ୍ରସିଦ୍ଧ ।

ଷୋଡ଼ଶ ଶତାବ୍ଦୀର ବିଶିଷ୍ଟ ଆୟୁର୍ବେଦ ବିଦ୍ୱାନ ବିଶ୍ୱନାଥ ଶେଣ ଗଜପତି ମୁକୁନ୍ଦଦେବଙ୍କ ରାଜସଭା ଅଳଙ୍କୃତ କରିଥିଲେ । ତାଙ୍କର ଅମରକୃତି ପଥ୍ୟାପଥ ବିନିଶ୍ଚୟ, ଭେଷଜ ସଂହିତା, ବିଶ୍ୱନାଥ ଚିକିତ୍ସା ବା ଚିକିତ୍ସାର୍ଣ୍ଣବ ସାର ପ୍ରଭୃତି ଆୟୁର୍ବେଦ ସଂଗ୍ରହ ଅତି ଉପାଦେୟ ଗ୍ରନ୍ଥ ଓ ଚିକିତ୍ସକ ଓ ଛାତ୍ରଙ୍କ ପାଇଁ ଅତି ଉପାଦେୟ ପୁସ୍ତକ ।

ଓଡ଼ିଶାର ରଘୁନାଥ ଦାସ ପୁରାଣ, ସାହିତ୍ୟ, ଅଳଙ୍କାର, ଧର୍ମଶାସ୍ତ୍ର, ଜ୍ୟୋତିଷ, ଆୟୁର୍ବେଦରେ ଜଣେ ଧୂରୀଣ ପଣ୍ଡିତ ଓ ଏହିଭଳି ପାଣ୍ଡିତ୍ୟ କ୍ୱଚିତ୍ ଦେଖାଯାଏ । ତାଙ୍କର ଆୟୁର୍ବେଦ ଶାସ୍ତ୍ର ଲୀଳାବତୀ ଓ କଳ୍ପଲତା ପାଇଁ ସେ ଅମର ହୋଇ ରହିବେ । କିନ୍ତୁ ଏହି ପୁସ୍ତକ ଦୁଇଟି କେବଳ ତାଳପତ୍ର ପୋଥିରେ ରହିଯାଇଛି । ପୁସ୍ତକାକାରରେ ପ୍ରକାଶିତ କରାଗଲେ ଚିକିତ୍ସକମାନେ ବିଶେଷ ଉପକୃତ ହୁଅନ୍ତେ ।

ଓଡ଼ିଶାର ଅନ୍ୟ ଆୟୁର୍ବେଦ ଶାସ୍ତ୍ରରେ ପାଣ୍ଡିତ୍ୟ ଲାଭ କରିଥିବା ଲେଖକମାନେ ଯଥା — ଭୀମ ଦାସ ତାଙ୍କର ଭୀମ ସଂହିତା; କୃଷ୍ଣ ଦାସ କୃଷ୍ଣ ଦାସ ବୋଲି ଓ ବୈଦ୍ୟଶାସ୍ତ୍ର ଦୀନବନ୍ଧୁ ହରିଚନ୍ଦନ ଚିକିତ୍ସା ମଞ୍ଜରୀ; ଯୋଗୀ ପ୍ରହରାଜ ମହାପାତ୍ର ବୈଦ୍ୟ ହୃଦୟାନନ୍ଦ; ନାରାୟଣ ଦାସ କବିରାଜ ରାଜବଲ୍ଲଭ ଦ୍ରବ୍ୟଗୁଣ; ଭୁବନେଶ୍ୱର ପଟ୍ଟଯୋଷୀ ଆୟୁର୍ବେଦ ସାର ସଂଗ୍ରହ; ଚକ୍ରପାଣି ଦାସ ତାଙ୍କର ଅଭିନବ ଚିନ୍ତାମଣି, ବିପ୍ର ଗୋପୀନାଥ ଚିକିତ୍ସା ମଞ୍ଜରୀ, ଗୋପୀନାଥ ପାତ୍ର ତାଙ୍କର ଭିଷକ୍ ଚିନ୍ତାମଣି, ନୀଳାମ୍ବର ସାମନ୍ତରାୟ ବୈଦ୍ୟଜୀବନ, ମୁରାରୀ ଦାସ ରୋଗ ବିନିଶ୍ଚୟ, ଗୋପୀନାଥ ଷଡ଼ଙ୍ଗୀ ତାଙ୍କର ବାଳବୋଧ ଚିକିତ୍ସା ମଞ୍ଜରୀ, ଯୋଗୀଶ୍ୱର ମହାପାତ୍ର ତାଙ୍କର ଭୀଷକ୍ ରତ୍ନମାଳିକା, ବାସୁଦେବ ଆଚାର୍ଯ୍ୟ ନିଦାନ ରତ୍ନାକର, ସୋମନାଥ ଷଡ଼ଙ୍ଗୀ ଭାଷ୍ୟ ବିବରଣ ପାଇଁ ପ୍ରସିଦ୍ଧି ଲାଭ କରିଛନ୍ତି ।

ମନୁଷ୍ୟମାନଙ୍କର ଚିକିତ୍ସା ବ୍ୟତୀତ ଗୋ ସମ୍ପଦଙ୍କ ଚିକିତ୍ସା, ଅଶ୍ୱ ଓ ଗଜମାନଙ୍କର ବିଭିନ୍ନ ରୋଗର କାରଣ ଓ ନିରାକରଣ ପାଇଁ ଔଷଧ ବ୍ୟବସ୍ଥା ଥାଇ ଆୟୁର୍ବେଦ ଶାସ୍ତ୍ର ଓଡ଼ିଶାର ବିଭିନ୍ନ ସ୍ଥାନରେ ମିଳିଥାଏ ଓ ବିଭିନ୍ନ ଅନୁଷ୍ଠାନମାନଙ୍କରେ ଗଚ୍ଛିତ ଅଛି ।

ଏତଦ୍ ବ୍ୟତୀତ ଗୁଣିଗାରେଡ଼ି ପୋଥିମାନଙ୍କରେ ମନ୍ତ୍ର ପ୍ରୟୋଗ ଦ୍ୱାରା ଦେହର ବିଭିନ୍ନ ରୋଗର ଚିକିତ୍ସା ଯଥା — ସାପ କାମୁଡ଼ା, ବିଛାକାମୁଡ଼ା, କୁକୁର କାମୁଡ଼ା, ବାଛରା, ସ୍ତନହରା, ରକା, ରକ୍ତଗଡ଼ିବା, ମୁଣ୍ଡବିନ୍ଧା ଓ କାମଳ ଚିକିତ୍ସା କରାଯାଇଥାଏ । କେତେକ କ୍ଷେତ୍ରରେ ମନ୍ତ୍ରୌଷଧିର ବ୍ୟବହାର ଅର୍ଥାତ୍ ମନ୍ତ୍ର ପ୍ରୟୋଗ କରାଯାଇ ଔଷଧ ବ୍ୟବହାର କରିବାକୁ ରୋଗୀକୁ ଦିଆଯାଇଥାଏ । ଏହି ଗୁଣିଗାରେଡ଼ି ମାଧ୍ୟମରେ ଚିକିତ୍ସାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ବିଭିନ୍ନ ରୋଗର ନିରାକରଣ ।



କବିରାଜ ଅନନ୍ତ ତ୍ରିପାଠୀ ଶର୍ମା
ଆୟୁର୍ବେଦ ମହାବିଦ୍ୟାଳୟ, ଅଙ୍କୁଶପୁର, ଗଞ୍ଜାମ









ଆର୍ତ୍ତତ୍ରାଣ – Artatrana



ଊଷା ଅଭିଳାଷ – Ushabhlasha



ଜଗନ୍ନାଥ ପଦ୍ମବେଶ – JAGANNATHA PADMABESA



ଜଗନ୍ନାଥ ଦଶାବତାର – Jagannath Dasabtar





ଜଣାଣ – Janana



ଉଷା ଅଭିଳାଷ – Ushabhlasha







ଜଣାଣ – Janana



ରୁକ୍ମିଣୀ – Rukmini







ଉଷା ଅଭିଳାଷ – Ushabhlasha

